# କଥା ସାହିତ୍ୟର କଳା ଓ କାରିଗରି

ଲେଖକ ଶ୍ରୀ କିଶୋରୀ ଚରଣ ଦାସ, ଖଟବିନ୍ ସାହୀ, କଟକ–୭୫୩ ୦୦୨
ପ୍ରକାଶକ ଇଷ୍ଟର୍ଣ୍ଣମିଡ଼ିଆ ଲିଃ, ଏ/୬୨–ନୂଆପଲ୍ଲୀ, ଭୁବନେଶ୍ୱର–୭୫୧ ୦୦୩, ଓଡ଼ିଶା, ମୁଦ୍ରାକର : ଶ୍ରୀ ଗୁରୁ-ଗୌରାଙ୍ଗ ପ୍ରେସ୍, ନୂଆପଲ୍ଲୀ, ଭୁବନେଶ୍ୱର–୭୫୧ ୦୧୨
ପ୍ରଚ୍ଛଦ : ରଂଜିତ୍ ପରିଜା । ପ୍ରଥମ ପ୍ରକାଶ : ମାର୍ଚ୍ଚ ୧୯୯୦ । ମୂଲ୍ୟ– [illegible]୦ ଟଙ୍କା

KATHA SAHITYARA KALA O KARIGARI

Written by Sri Kishori Charan Das, Khatbin Sahi, Cuttack-753002, Published by Eastern Media Ltd. A/62, Nayapalli, Bhubaneswar-751 003, ORISSA, Printed at Sri Guru Gouranga Press, Nayapalli, Bhubaneswar-751 012, Cover design : Ranjit Parija First Edition—March 1990, Price

ସାହିତ୍ୟକୁ ଅସାମାନ୍ୟ ଶ୍ରଦ୍ଧା

ଏବଂ ନିଷ୍ଠାର ସହ ଚିହ୍ନି

ଚିହ୍ନାଇବାର ସାଧନାରେ

ବ୍ରତୀ, ବନ୍ଧୁ

ଡକ୍ଟର ଖଗେଶ୍ୱର ମହାପାତ୍ରଙ୍କୁ—

ଲେଖକଙ୍କ ଦ୍ୱାରା ରଚିତ ଅନ୍ୟାନ୍ୟ ପୁସ୍ତକ :-

ଓଡ଼ିଆ :-

(କ) ଗଳ୍ପ ସଂଗ୍ରହ-ଭଂଗା ଖେଳନା, ଲକ୍ଷ ବିହଂଗ, ଘରବାହୁଡ଼ା, ମଣିହର, ଠାକୁର ଘର, ନାଲି ଗୁଲୁଗୁଲୁ ସାଧବ ବୋହୂ, ଗମନ, ଖେଳର ନାଆଁ ରଂଗ, ଭିନ୍ନ ପାଉଁଶ, ଶୀତ ଲହରୀ, ତ୍ରୟୋବିଂଶ ମୃତ୍ୟୁ, ଲେଉଟାଣି

(ଖ) କବିତା ସଂଗ୍ରହ-ମିନି କାମନା

(ଗ) ପ୍ରବନ୍ଧ ସଂଗ୍ରହ-ଲେଖକର ସଂସାର

ଇଂରାଜୀ :-

(କ) ଗଳ୍ପ ସଂଗ୍ରହ-Death of an Indian; Wild Peacock and other stories.

(ଖ) କବିତା ସଂଗ୍ରହ-Faces in the Dark.

# ନିଜ କଥା

ଯଥାର୍ଥରେ ପ୍ରବଂଧ ନୁହେଁ । ସାହିତ୍ୟ ନାମକ ଯେଉଁ 'ଅଦରକାରୀ' କାମରେ ମାତି ରହିଲି ଏତେଦିନ ଯାଏଁ, ଏବଂ ତାକୁ ଛିଣ୍ଡେଇଦେବାର ବେଳ ଆସିଗଲାଣି କହିଲେ ଚଳେ, ସେହି କାମରେ ମନ ବଳେଇଥିବା ଭାଇଭଉଣୀମାନଙ୍କ ସାଂଗରେ ଦି'ପଦ କଥାଭାଷା ହେବାକୁ ଇଚ୍ଛାହେଲା । ମୋରି ଅଭିଜ୍ଞତା, ସାପେକ୍ଷତା ଓ ଦୋଷଦୁର୍ବଳତାକୁ ନେଇ । ତେଣୁ "କଥା"ର ସଂପାଦକ ଯେତେବେଳେ ପ୍ରସ୍ତାବ କଲେ ଯେ ତାଙ୍କ ପତ୍ରିକାରେ ପ୍ରତିମାସ ଧାରାବାହିକ ଭାବରେ କିଛି ଲେଖିଲେ ଭଲ ହୁଅନ୍ତା, ମୁଁ ଭାବିଲି ଯେ ମୋ ମନୋଭାବର ଏହି ଉଦ୍‌ଗତ ଏବଂ ଅଂତରଂଗ ଧାରାଟିକୁ ଧୀରେ ଧୀରେ ପ୍ରବାହିତ କଲେ ମୋତେ ଖୁସି ଲାଗିବ, ଏବଂ ମୋର ତରୁଣ ବଂଧୁମାନଙ୍କୁ ବୋଧହୁଏ ଚିଟା ଲାଗିବ ନାହିଁ । ମୋତେ ଖୁସି ଲାଗିବା ସ୍ୱାଭାବିକ । କିଂତୁ ସେମାନଙ୍କୁ ଚିଟା ଲାଗିବ ନାହିଁ ବୋଲି ଆଶା କରୁଛି ଏହି କାରଣରୁ, ଯେ ମୋ ଲେଖାରେ ନିର୍ଦ୍ଦେଶ, ଉପଦେଶ ଆଦିର ଭାରୀପଣ ନାହିଁ । କୋଉ ପାଣ୍ଡିତ୍ୟ ଅଛି ଯେ ଭାରୀପଣ ଆସିବ ବୋଲି ଥଟ୍ଟା କରନ୍ତୁ ନାହିଁ । ଭାରୀପଣ ନ ଥିଲେ ମଧ୍ୟ ଗାମ୍ଭୀର୍ଯ୍ୟ ନାହିଁ ନା କଅଣ ? କେବଳ ଶୁକ୍ଳକେଶର ଗାମ୍ଭୀର୍ଯ୍ୟ ନୁହେଁ । ଆମ କଥା ସାହିତ୍ୟ ଅଧିକରୁ ଅଧିକ ସମୃଦ୍ଧ ହୋଇଉଠୁ, ମୁଁ ଓ ମୋ ବେଳର ଲେଖକମାନେ ଯେଉଁ ବାସ୍ତବ ଅବା ସତର ଅନୁଭୂତିକୁ ଚିହ୍ନେଇ ପାରିଲୁ ନାହିଁ (ଅକ୍ଷମତା, ଭୀରୁତା ଅବା ଯେକୌଣସି କାରଣରୁ), ଆମର ଦାୟାଦମାନେ ତାକୁ ଟପି ଯାଇ କେଉଁ ଏକ ଅଭିନବ ଅପରୂପ ଦିଗନ୍ତର ଛବି ଆଂକିବେ କି ଭବିଷ୍ୟତ ପାଇଁ, ଏହି କାମନାର ଆନ୍ତରିକତା ଏବଂ ବ୍ୟାକୁଳତା ହିଁ ମୋ ରଚନାର ମୁଖ୍ୟସ୍ୱର । ତେଣୁ ତାକୁ ନ ଶୁଣିଲେ କିଂବା ତା'ପ୍ରତି ଗୁରୁତ୍ୱ ନ ଦେଲେ ମୋତେ ବାଧିବ, ଏଥିରେ ସଂଦେହ ନାହିଁ ।

"କଥା"ରେ ଯେଉଁ କ୍ରମ ଏବଂ ଭଂଗୀରେ ଲେଖାଟିକୁ ଲେଖିଛି, ପାହାଚରୁ ପାହାଚ ଉଠିଲା ପରି, ଆଜିରୁ କାଲିକୁ ଲେଉଟେଇଲା ପରି, ବହିରେ ମଧ୍ୟ ସେହି 'କଳା ଓ କାରିଗରି'କୁ ଅକ୍ଷୁଣ୍ଣ ରଖିଲେ ଭଲହେବ ପରା ବୋଲି ବିଚାରିଲି । ଅନୁରୋଧ ଯେ ପଢିଲାବେଳେ ସେହି କ୍ରମଶୀଳତାର ମର୍ଯ୍ୟାଦାକୁ ଭାଂଗିଦେବେ ନାହିଁ ।

ଶେଷରେ "କଥା"ର ସଂପାଦକ ଶ୍ରୀ ସୌମ୍ୟରଂଜନ ପଟ୍ଟନାୟକ ଓ ସଂଯୋଜକ ଶ୍ରୀ ଗୌରହରି ଦାସଙ୍କର ସଦିଚ୍ଛା, ସହଯୋଗ ଏବଂ ଧୈର୍ଯ୍ୟ ପାଇଁ ସବିଶେଷ କୃତଜ୍ଞତା ଜଣାଇ ରହିଲି । ଇତି ।

**କିଶୋରୀ ଚରଣ ଦାସ**

ପ୍ରଥମେ ମୁଁ ମୋର ଲେଖକ ଭାଇ ଓ ଭଉଣୀମାନଙ୍କଠାରୁ କ୍ଷମା ମାଗି ନେଉଛି ଯେ ମୁଁ ଏଭଳି ଗୋଟିଏ ବିଷୟର ଅବତାରଣା କରୁଛି—ସତେକି ସାହିତ୍ୟ ରଚନା ଆମର ଅନ୍ୟତମ ଶିଳ୍ପ ଓ ତାକୁ ଶିଖିବାକୁ ପଡ଼ିବ ! ଅପରପକ୍ଷରେ ମୁଁ ଲେଖକ ହେବାପାଇଁ ଆଗ୍ରହୀ ବଂଧୁମାନଙ୍କୁ ଆଶ୍ୱାସନା ଦେବାକୁ ଚାହେଁ ଯେ ମୁଁ ପାଠ ପଢ଼େଇବାକୁ ଯାଉନାହିଁ । ମୋର ଦୃଢ଼ ବିଶ୍ୱାସ ଯେ ଜଣକର ଅନୁଭବ, ଆଭିମୁଖ୍ୟ, ଆଂତରିକତା, ଆବେଗ, ଚିଂତା ଏବଂ କଳ୍ପନାଶକ୍ତି ମଧ୍ୟରୁ ଯେ କୌଣସି ମୂଳଧନ ଊଣା ହୋଇଥିଲେ, ସେ ଲେଖନୀ ଧରିବା ପୂର୍ବରୁ ନିଜେ ତା'ର ପ୍ରତିକାର କରିବା ଉଚିତ । କେହି ପାଠକ, ଶିକ୍ଷକ ବା ସମୀକ୍ଷକ ସେହି ଅଭାବ ଦୂରକରି ପାରିବ ନାହିଁ । ହୁଏତ ସେ ତ୍ରୁଟି ଦର୍ଶାଇ ପାରିବ, ଦରିଦ୍ରତା ଏଇଠି ବୋଲି ବତେଇ ଦେଇ ପାରିବ । କିଂତୁ ସେ ତା' ବଦଳରେ ଗୋଟିଏ 'ଉଚିତ' ଗଳ୍ପ ବା କବିତା ଲେଖି ପାରିବ ନାହିଁ । ଲେଖିଲେ ତାକୁ ପରପୁଅ ତେଣୁ ନିରର୍ଥକ ବୋଲି କହିବାକୁ ହେବ ।

ଏହେତୁ ମୋର ନିବେଦନ ଯେ ମୁଁ କେବଳ ଏହି ସୀମିତ ଉଦ୍ଦେଶ୍ୟ ନେଇ ଧାରାବାହିକ ପ୍ରବଂଧଟିଏ ଲେଖିବାକୁ ସାହସ କରୁଛି—ଯେ ବୋଧହୁଏ ସାହିତ୍ୟପାଠରେ ପାଠୁଆ ନ ହେଲେ ମଧ୍ୟ ମୁଁ ପୁରୁଣା (ଅତଃ ପ୍ରବୀଣ) ଲେଖକ ହିସାବରେ ଦି'ପଦ କହି ପାରିବି, ଯଦ୍ୱାରା ଉଦ୍ୟତ ଓ ଆଗ୍ରହୀ ନୂଆ କଥାକାରମାନେ ତାଙ୍କ ମୂଳଧନ ଖଟେଇବାର କେତୋଟି ବାଟ ପାଇଯିବେ, ଯେପରିକି ସେମାନେ ନିଜକୁ ଏବଂ ଅନ୍ୟ-ମାନଙ୍କୁ ଅଧିକ ଆନଂଦ ଦେଇ ପାରିବେ । ମୁଁ ଯେଉଁ ବାଟ ବତେଇବି ତାକୁ ନ ମାନିଲେ ମଧ୍ୟ କିଂବା ନ ମାନିବା ହେତୁ ସେମାନେ ହୁଏତ ସୁଲେଖକ ହୋଇ ପାରିବେ, କିଂତୁ ମୋର ଧାରଣା ଯେ ଯୁଆଡୁ ହେଲେ ମୋର ସାନକୁହା ତାଙ୍କର କିଛିଟା ଉପକାରରେ ଆସିବ ।

ହଉ, ଉପକ୍ରମଣିକା ଏତିକିରେ ଥାଉ । ବର୍ତ୍ତମାନ ପ୍ରଶ୍ନହେଲା ଗପଟିକୁ କେଉଁ ଶୁଭକ୍ଷଣରେ ଆରମ୍ଭ କରିବା, କେଉଁ ଭୀରୁ ଝରଣାଟିକୁ ଏଇ ମୋର ଗଂଗା

ବୋଲି ଆବୁରି ବସିବା । ପ୍ରତିଦିନ ଛୋଟ ବଡ଼ କେତେ ଅନୁଭୂତି ଆମର ରସଗ୍ରାହୀ ଚେତନାରେ କରଘାତ କରି ଚାଲି ଯାଉଛି । କାହାକୁ ପଛରୁ ଡାକିବା ଓ କହିବା—ଆ' ମୋ ପାଖରେ ଟିକିଏ ବସ୍, ମୁଁ ତୋତେ ଟିକିଏ ଭଲକରି ଦେଖେ, ଶୁଣେ, ତୋ' ବିଷୟରେ ଯତ୍ ସାମାନ୍ୟ ଚିଂତାକରେ, କାହିଁକିନା, ମୁଁ ତୋ'ର ଚେହେରଚରିତ୍ରକୁ ନେଇ ଗୋଟାଏ ଗପ ଲେଖିବି ? ମୋ ମତରେ ମୂଳରୁ ଟିକିଏ ବାଛବିଚାର କରି-ନେବା ଭଲ । କାହିଁକିନା ସମୟ ମୂଲ୍ୟବାନ୍ । ବିଶେଷତଃ ସମକାଳୀନ ଭାରତୀୟ ଲେଖକ ପାଇଁ ଯେ ପେଟ ପୋଷିବାର ଦାଉରେ ନାନାଦି ସଂସାର କାମରେ ଜଡ଼ିତ ହୋଇ ରହିଥାଏ ଏବଂ ସମାଜ ଆଖିରୁ ବଂଚେଇ ସାମାନ୍ୟ କେତୋଟି ମୂହୂର୍ତ୍ତ ଚୋରି କରି ଆଣେ, କ'ଣ କିଛି ଲେଖିବ ବୋଲି । ସେ ଯଦି ଅଦମ୍ୟ ଉତ୍ସାହସରେ ଏକାଧିକ ପୃଷ୍ଠା ଲେଖି ସାରିଲା ପରେ ଦେଖେ ଯେ କଥାଟା ଜମୁନାହିଁ, ପାଠକ ଭାଇର ମନକୁ ଛୁଇଁଲା ପରି ମନେହେଉ ନାହିଁ, ତେଣୁ ଯାହା ଲେଖିଲି ତାକୁ ଟିକି ଟିକି କରି (କାହିଁକିନା ନିଜ ଉପରେ ରାଗ ଚଢ଼େ) ଛିଣ୍ଡେଇ ଦେବା ଭଲ... ସେ ଯଦି ଅଧେ ଲେଖି ସାରିଲା ପରେ ମନକୁ ପାଉନାହିଁ ବୋଲି ଅଟକି ଯାଏ, କିଂତୁ ଅକଲିଆରେ ପଡ଼ି ଆହୁରି ଲେଖିଯାଏ ଗପକୁ କୌଣସିମତେ ସାରିଦେବା ପର୍ଯ୍ୟନ୍ତ ଏବଂ କାଳ-କାଳକୁ ଦୁଃଖ ରହିଯାଏ ଯେ ଇଏ ମୋର ଯୋଗ୍ୟ ସଂତାନ ହୋଇ ପାରିଲା ନାହିଁ ଇତ୍ୟାଦି ପରିସ୍ଥିତିରେ ଯେଉଁ ସମୟ ନଷ୍ଟହୁଏ ତାକୁ କ'ଣ ଫେରାଇ ଆଣିହେବ ? ସବୁଠାରୁ ମାରାତ୍ମକ ହେଉଛି ଯେ ଏହି ପ୍ରକାର ଘନ ଘନ ଗର୍ଭପାତ ଅବା କୁଣ୍ଠିତ ଜନ୍ମଦାନ ଘଟାଇବା ପରେ ଲେଖକର ଆତ୍ମବିଶ୍ୱାସ କମିଯାଏ । ତେଣୁ ଲେଖା ଆରମ୍ଭ କରିବା ପୂର୍ବରୁ ନିମ୍ନଲିଖିତ କେତୋଟି ବିଚାର ମନକୁ ଆଣିଲେ ଭଲହେବ ପରା —

୧) ଯେଉଁ ଆବେଗ ତୁମକୁ ବର୍ତ୍ତମାନ ପାଇଁ କୁତୁକୁତୁ ଅବା କଲବଲ କରୁଛି ଲେଖିବା ପାଇଁ, ତା'ର ବଳ-ବହପ ତଥା ସତମିଛ ଜଣା ଅଛି କି ? ଆବେଗଟି ଆଖି ଦୁରୁଶିଆ ହେଲେ ମଧ୍ୟ ଉପରଠାଉରିଆ ହେବା ଅସଂଭବ ନୁହେଁ । ଝିଅ ବିଦାହେଲା ବେଳକୁ ପାଖପଡ଼ିଶାର ମାଉସୀ ହୁଏତ ସବୁଠାରୁ ବେଶି କାଂଦେ, କିଂତୁ ତା'ର ସେ ଦୁଃଖ' କେତେ ସମୟ ? ନାଁ ଯେ କୌଣସି ଅଟ୍ଟହାସ୍ୟରେ ହାସ୍ୟରସର ଉପାଦାନ ଅଧିକ ବୋଲି ଧରିନେବା ଉଚିତ ହେବ ? ହସ-କାଂଦର ପ୍ରବଣତା ପ୍ରାୟଶଃ ଏକ ସଂକ୍ରାମକ ରୋଗ ବୋଲି କହିଲେ ଅତ୍ୟୁକ୍ତି ହୋଇପାରେ, ତେବେ ସେଥିପ୍ରତି ସାବଧାନ

ହେବା ବୁଦ୍ଧିମାନର କାର୍ଯ୍ୟବୋଲି ମୁଁ ମନେକରେ । ତେଣୁ ଆବେଗ ଆସିଲେ ଆସୁ, ଚିଂତା ନାହିଁ । ସମୟ ବିତିଯାଉ, ଦେଖାଯାଉ ତା'ର ପହୁଂଚ କେତେ ଦିନକୁ, କେତେ ଦୂରକୁ । ପୁଣି ସେ କୃତ୍ରିମ ହୋଇପାରେ । ଅର୍ଥାତ୍ ତୁମକୁ କେଉଁ ଏକ ବିଶିଷ୍ଟ ପରିବେଶ ଚକଚକିଆ ହେଲେ ଅଧାପନ୍ତରିଆ ପିତୁଳାଟିଏ ଦେଖାଇ ଏଇ ତୁମ ଦେବୀ ପ୍ରତିମା ବୋଲି ଠକେଇବାକୁ ବସିବା ବିଚିତ୍ର ନୁହେଁ । ହୁଏତ ଜହ୍ନ, ରଜନୀଗଂଧା, ସୁଦୂର ସଙ୍ଗୀତ ଇତ୍ୟାଦିର ରୋମାଣ୍ଟିକ୍ ବାତାବରଣରେ ଏକୁଟିଆ ବୁଢ଼ାବୁଢ଼ୀଙ୍କର ବାର୍ତ୍ତାଳାପ ତୁମକୁ ମଜାର ଲଗିଲା, ପ୍ରେମାଳାପ ବୋଲି ମନେହେଲା । ହୁଏତ ମଜ୍-ଦୂର ବସ୍ତିରେ ବୁଲୁ ବୁଲୁ ତୁମ ଆଖିରେ ପଡ଼ିଲା ଗୋଟିଏ ଅଳ୍ପ ବୟସୀ ମାଆ, ଦେଖିବାକୁ ମଂଦ ନୁହେଁ, ତା' ଚାରିପାଖରେ ଗୁଡ଼ିଏ ଦରଲଂଗଳା ପିଳେହିପେଟା ପିଲା ତା' କାନ ଟାଣୁଛନ୍ତି, ତାକୁ ଯାବତୀୟ ହଇରଣ କରୁଛନ୍ତି । ତା'ବୋଲି ଚଟକିନି "ଅପରାହ୍ନରେ ପ୍ରେମ" ବା "ଧୂଳିମାଟିର ଗୋଲାପ" ନାମକ ଗୋଟିଏ ଗପ ଲେଖି ବସିବା ଉଚିତ ହେବ କି ? ପ୍ରକୃତି ପରିବେଶର ପାଭ୍ଲୋଭ୍ (Pavlov) ମାନଙ୍କୁ ବିଶ୍ୱାସ ନାହିଁ । ଅତଏବ ସବୁର୍ କର, ସମୟ ବିତିଯାଉ, ନିଶା କଟିଯାଉ । କଲମ ଧରିଲେ ଧରିପାର ଯେବେ ତୁମ ନିଜକୁ ବିଶ୍ୱାସ ଦିଆଇ ପାରିବ ଯେ (କ) ଅନୁରୂପ ଦୃଶ୍ୟ ନେଇ ସେହି ଧରଣର ପ୍ରତିକ୍ରିୟା ବାରଂବାର ଆସୁଛି ତୁମ ମନରେ, ଯେଉଁଥିରୁ ବୁଝିବାକୁ ହେବ ଯେ ଏକ ନିର୍ଦ୍ଦିଷ୍ଟ ଭାବ-ଭାବନାର ମଂଜି ପୋତିହୋଇ ଗଲାଣି ତୁମ ଚେତନାରେ ଏବଂ (ଖ) ତୁମେ କଳ୍ପନାରେ ସେହି ବୁଢ଼ାବୁଢ଼ୀ କିଂବା ଅଳ୍ପବୟସୀଙ୍କ ବାସ୍ତବ ସଂସାର ସାଂଗରେ ନିଜକୁ ଯଥାସମ୍ଭବ ମିଶାଇ ପାରିବ, ମଂଜିରୁ ଲତାପତ୍ର ଫୁଲଫଳର କାୟା ଗଢ଼ିବାର ଦାୟିତ୍ୱ ନେଇ ପାରିବ । ତାହାହେଲେ ଯାଇଁ ଜାଣିବ ଯେ ଆବେଗଟି ଉପରଠାଉରିଆ କି ମିଛି ମିଛିକା ନୁହେଁ । ପ୍ରକୃତପକ୍ଷେ ଅନୁଭୂତ । ସତ ।

୨) କିଂତୁ ଅପରପକ୍ଷେ ଆବେଗଟି ଅତ୍ୟଧିକ ପ୍ରତ୍ୟକ୍ଷ ଏବଂ ବ୍ୟକ୍ତିଗତ ହେଲେ ଅସୁବିଧା । ସଫଳ ସୃଷ୍ଟି ପାଇଁ ଯତ୍‌ସାମାନ୍ୟ ଦୂରତ୍ୱ ନିତାନ୍ତ ଆବଶ୍ୟକ । ବିଷୟବସ୍ତୁରେ ଆଲୁଅ ଥାଉ, ତାତି ଥାଉ, କିଂତୁ ଏମିତି ନ ହେଉ ଯେ ଆଖି ଝଲସି ଯାଉଛି, ଦେହ ପୋଡ଼ି ଯାଉଛି । ଦୂରେଇ ଯାଅ, ଫୋକସ୍ ଠିକଣା କର, ତା'ପରେ ଯାଇଁ ଲେଖିବା କଥା ଭାବିବ । ଓ୍ୱାର୍ଡସ୍‌ଓ୍ୱାର୍ଥଙ୍କ ସୁପ୍ରସିଦ୍ଧ ଉକ୍ତିଟିଏ ମନେ ପଡ଼େ । ସ୍ଥିର ଚିତ୍ତରେ ଭାବାବେଗର ସ୍ମରଣ (emotion recollected in tranquility) ହେଉଛି କବିତାର ଉପଯୋଗୀ ଆଧାର । କହିବା ବାହୁଲ୍ୟ ଯେ ପଦ୍ୟଠାରୁ ବଳି ଗଦ୍ୟରେ ଏହିପ୍ରକାର "ଶାନ୍ତ ଆବେଗ"ର ପ୍ରୟୋଜନୀୟତା ଆହୁରି ଅଧିକ । ଜଣେ

ସମକାଳୀନ କଥାକାର ଟ୍ରୁମ୍ୟାନ୍ କ୍ୟାପୋଟ୍ ମଧ୍ୟ ଏହି ମର୍ମରେ କହିଛନ୍ତି–"ମୋ ମତରେ ଅନୁଭୂତ ଭବାବେଗକୁ ନିଃଶେଷ କରି ସୁସ୍ଥହେଲା ପରେ ଯାଇଁ ମୁଁ ତାକୁ ଥିକିଂବାର ଟିକିନିଖି ଦର୍ଶାଇବାର ସାହସ ଓ ସାମର୍ଥ୍ୟ ପାଇ ପାରିବି......ପାଠକକୁ କାଂଦେଇବାକୁ ହେଲେ ତା'ର ଯଥେଷ୍ଟ ପୂର୍ବରୁ ତୁମର ଲୁହ ଶୁଖି ଯାଇଥିବା ଆବଶ୍ୟକ ।" ଏହି ପ୍ରସଙ୍ଗରେ ଗୋଟିଏ ଉଦାହରଣ ଦିଆଯାଉ । ମୋର ପୁଅଟିଏ ଅକାଳରେ ଚାଲି ଯାଇଛି । ମୋର ଶୋକ ଏକାନ୍ତ ଏବଂ ଅସହ୍ୟ । କିଂତୁ ସେହେତୁ ମୁଁ ନିଜକୁ ବ୍ୟକ୍ତ କରିବାକୁ ଚାହେଁ । ଲେଖକ ପକ୍ଷରେ ଏହି ଶାସ୍ତ୍ରସମ୍ମତ ପ୍ରକ୍ରିୟା ଗପଟିଏ କିଂବା କବିତାଟିଏ ଲେଖିବା ଛଡ଼ା ଆଉ କ'ଣ ହୋଇପାରେ ? ବେଶ୍ । କିନ୍ତୁ ସେ କେବଳ ସେତିକିବେଳେ ଲେଖୁ ଯେତେବେଳେ ସେ ସମୟର ସ୍ରୋତରେ ଖଣ୍ଡେ ଦୂର ଚାଲି ଯାଇଥିବ । ଘାଆ ଶୁଖି ଯାଇଥିବ, କିନ୍ତୁ କଟାଦାଗ ଦିଶୁଥିବ ଜଳ ଜଳ ହୋଇ । ସ୍ମରଣରେ ସବୁ ପୁଣି ଆସିଯିବ ପାଖକୁ, ହୁଏତ ଆଖିରେ ଲୁହ ଜକେଇ ଆସିବ, କିଂତୁ ଭଗବତ ଅନୁଭୂତିକୁ ବୁଦ୍ଧି ଚିଂତାରେ ସମାହିତ (intellectualize) କରିବାରେ ବିଶେଷ କଷ୍ଟ ହେବ ନାହିଁ । ତାହାହେଲେ ଏକାଧାରରେ ଅନୁଭୂତ ଆବେଗର ସତ୍ୟତା ଓ ତା'କୁ ନେଇ ଗଭୀରତମ ଚିଂତା ମୋ ଲେଖାରେ ପ୍ରତିଫଳିତ ହୋଇ ପାରିବ । ଏଇଠି ମୁଁ ଗୋଟିଏ ନିଜକଥା କହୁଛି । ମୋର ଗୋଟିଏ ଗଳ୍ପ "ମଣିହରା" ଏହିପରି ଏକ ଆବେଗର କ୍ରୂଶ ବହନ କରିଛି ଏବଂ ସେଇଥିପାଇଁ ବୋଧହୁଏ ବିଶେଷ ଆଦୃତ ହୋଇ ପାରିଛି ବୋଲି ମୋର ବିଶ୍ୱାସ । ଯଦିଓ ମୃତ ସନ୍ତାନର ମାଆ ଏବେ ମଧ୍ୟ ମୋତେ ଉଲୁଗୁଣା ଦିଏ–ତୁମେ ବାପ ହୋଇଛ ବୋଲି ଏମିତି ଲେଖି ପାରିଲ । ମାଆ ହୋଇଥିଲେ ପାରିଥାଆନ୍ତ ?......... ଛାଡ଼ନ୍ତୁ, ସେ କଥା ଭିନ୍ନ ।



ପୂର୍ବରୁ କୁହାଯାଇଛି ଯେ ଅନୁଭୂତ ଆବେଗକୁ ଗଳ୍ପପାଇଁ ଗ୍ରହଣଯୋଗ୍ୟ କରିବାକୁ ହେଲେ ଦେଖିବାକୁ ହେବ ତା'ର ସତ କେତେ, ମିଆଦ କେତେ, ଏବଂ ସେ ତୁମ ପାଖରେ ଥିଲେ ମଧ୍ୟ ଅଳ୍ପବହୁତ ଦୂରରେ ଅଛି କି ନାହିଁ, ଯେପରିକି ତୁମେ ତାକୁ ନିର୍ମଳ ଗ୍ରହାଣୀରେ ଗ୍ରହି ପାରିବ ଓ ତା'ର ରୂପରେଖ ଆଂକି ପାରିବ । ବିଶେଷ ସଫଳତା ପାଇଁ ଆଉ ଗୋଟିଏ ଦୂର୍ବଳତା ପ୍ରତି ସାବଧାନ ରହିବା ଉଚିତ । ଯଦିଓ ତାକୁ ପ୍ରାରଂଭିକ ବିଗ୍ରରଧାରର ଅନ୍ୟତମ ପ୍ରଶ୍ନରୂପେ ଗଣିହେଉ ନାହିଁ, କାରଣ ସେଥିପାଇଁ କଠୋର ଆତ୍ମ-ସମୀକ୍ଷାର ଆବଶ୍ୟକ । ପ୍ରଶ୍ନଟି ହେଲା–

ମୋର ଏଇ ଆବେଗ-ପିଲା କ'ଣ ପ୍ରକୃତରେ ସ୍ୱାଧୀନ, ସ୍ୱତଃସ୍ଫୂର୍ତ୍ତ ? ନା, ସେ ମୋର ଅନ୍ତର୍ନିହିତ ଅନୁରାଗ-ବିରାଗ ବା ତଥାକଥିତ ନୀତିବଦ୍ଧତାର ପିଠିରେ ସବାର ହୋଇ ନିଜକୁ ବଡ଼ ବୋଲାଉଛି ?

ତୁମ ଗପରେ ତୁମର ସ୍ୱକୀୟ ଭବରୂପ ବା ଚିନ୍ତାଦର୍ଶନର ଛାଇ ନ ପଡୁ ବୋଲି ମୁଁ କହୁନାହିଁ । ଛାଇ ପଡ଼ିବାକୁ ବାଧ୍ୟ ଏବଂ କେତେକ କ୍ଷେତ୍ରରେ ଲେଖକ ତାକୁ ବଢ଼େଇବାକୁ ଗ୍ରହିଁବା ମଧ୍ୟ ସ୍ୱଭବିକ, ଯେତେବେଳେ ସେ ତା'ର ଆଭିମୁଖ୍ୟକୁ ସ୍ପଷ୍ଟ କରିଦେବା ଉଚିତ ମନେକରେ । କିଂତୁ ମୋର କହିବା କଥା ହେଉଛି ଯେ ସେ ପରେ ଆସୁ, ଗପକୁ ତେଜିବା ପାଇଁ, ରଂପେଇବା ପାଇଁ । ଆବେଗକୁ ତିଆରି କରି ଗପକୁ ବାଟ କଢ଼େଇ ନ ଆଣୁ । ତୁମେ ଚେଷ୍ଟାକଲେ ଜାଣି ପାରିବ ଆବେଗଟି ଆପଣା ଛାଏଁ ଆସିଛି କି ନାହିଁ ? ଅର୍ଥାତ୍ ମଣିଷଦଶାର କେଉଁ ଏକ ବାସ୍ତବ ଅନୁଭବ ତୁମକୁ ଉତ୍ତେଜିତ , ଉଦ୍‌ବେଳିତ ଅବା ବ୍ୟଥିତ କରିଛି, ନା ତୁମେ 'ସେମିତିକା ମଣିଷ' ବୋଲି କୌଣସି ଏକ ଅଧାପନ୍ତରିଆ, ଏକତରଫା ଅବା ଦୁର୍ବଳ ଦେଖାଶୁଣା ଘଟଣାକୁ ଅନୁଭୂତିର ମର୍ଯ୍ୟାଦା ଦେଇ ତାକୁ ବଢ଼େଇବାକୁ ଗ୍ରହୁଁଛ, ନିଜର ଅରମାନ ମେଣ୍ଟାଇବା ପାଇଁ । ଏହି ବିଗ୍ରରଟି କଷ୍ଟସାଧ୍ୟ ହେଲେ ମଧ୍ୟ କରି ପାରିଲେ ଭଲ । ତାହାହେଲେ ତୁମ ଗପଟି ସଜୀବ ଓ ବହୁଜନଆଦୃତ ହୋଇ ପାରିବ । କେଉଁ ନିରପେକ୍ଷବାଦୀ ମଧ୍ୟ ତୁମକୁ ଦେଷୀକରି ପାରିବ ନାହିଁ । ପ୍ରେମଚଂଦ୍‌ଙ୍କ "କଫନ୍" ପଢିଲା ପରେ କ'ଣ କେବେହେଲେ ଏଇ ଧାରଣା ଆସିବ ଯେ ସେ ଦଳିତପନ୍ଥୀ ବୋଲି ଏମିତି

ଲେଖିଲେ ? ନା । ଅପରନ୍ତୁ ସ୍ତ୍ରୀର ମୃତ୍ୟୁରେ ସ୍ୱାମୀ ଓ ତା'ର ବଂଧୁମାନଙ୍କର ଶୋକା-ତୁର ଖିଆପିଆର ଯେଉଁ ନିଖୁଣ, ହାସ୍ୟାସ୍ପଦ ଏବଂ ସକରୁଣ ଚିତ୍ର ଫୁଟି ଉଠିଛି ସେଇ ଗପରେ । ତାକୁ ପଢି ମଣିଷଦଶାର ଏକ ଭୟାବହ ବାସ୍ତବତା ତୁମ ମର୍ମକୁ ବିଂଧିବ; ପରେ ଯାଇଁ ଖିଆଲ ହେବ ଯେ ଏଭଳି ଦଶା ବିଶେଷ ଭବରେ ଦଳିତମାନଙ୍କ ସମା-ଜରେ ହିଁ ସଂଭବ ଓ ସେଥିପାଇଁ ଆମେ ଏବଂ ଆମର ସମାଜ ଦାୟୀ । କିଂତୁ ଆଉ କେତେକ ଗପ ଅଛି ଯାହାକୁ ପଢିଲେ ମନେହେବ ଯେ ଲେଖକ ତା'ର ସାମାଜିକ ଦୃଷ୍ଟିକୋଣ ଅବା ଆପଣା କାମକ୍ରୋଧରେ ବାଂଧିହୋଇ ଏମିତି ଲେଖିଛି । ତା'ର ଦୃଷ୍ଟାନ୍ତ ମୋତେ ଦେବାକୁ ପଡ଼ିବ ନାହିଁ ବୋଲି ଆଶା କରୁଛି ।

ଆବେଗ ଝରିଆରେ ଗଳ୍ପର ମଂଜିଟିଏ ପୋତି ହୋଇଗଲା ମନ ଭିତରେ—ଦୃଶ୍ୟ-ଅନୁଭୂତ କଳ୍ପିତ ଚରିତ୍ର, ଘଟଣା ଅବା ଉଭୟର ସମାବେଶ । କଲମ ଧରିବା ପୂର୍ବରୁ ଆଉ କିଛି କାମ କରିବା ଦରକାର ହେବ କି ? ମୁଁ କହିବି ହଁ, ଯଦି ସମୟ-ସୀମାର ତାଡ଼ନା ନ ଥାଏ ତାହାହେଲେ ଅଳ୍ପବହୁତ ଅଧ୍ୟୟନ କରିବା ଉଚିତ । ସାଧାରଣ ଅର୍ଥରେ ହୋମ୍‌ୱାର୍କ । ଯାହାକୁ ଗଢିବା ପାଇଁ ମନ ବଳେଇଛ, ତା'ର ଝଲକଟିଏ ମାତ୍ର ଦିଶି ଯାଇଛି ତୁମକୁ । ଏଣିକି ତା'କୁ ରକ୍ତମାଂସର ଦେହଟିଏ ଦେବାକୁ ହେଲେ କିଛି ତଥ୍ୟ ସଂଗ୍ରହ (fact-finding) କରିବାକୁ ପଡ଼ିବ । ଗାଆଁ ଅବା ସହରର ଘର ଅଗଣା ରାସ୍ତାଘାଟରେ ଯେଉଁ ଘଟଣାଟି ଘଟିଲା ତା'ର ଚେହେରା-ଚରିତ୍ର ଜଣାଅଛି କି ତୁମକୁ ? ଆପଣା ଇଂଦ୍ରିୟ ସହକାରେ ତା'ର ପରିବେଶକୁ ଚିହ୍ନିଛ ? ତା'ର ସଂଗୀତ ଶୁଣିଛ ? ତା'ର ବାସ୍ନା ଶୁଂଘିଛ ? ନହେଲେ ଯାଅ ସେଠିକି । 'ସେଠିକି' ମାନେ ଗଳ୍ପ ପାଇଁ ଯେଉଁ ପ୍ରକାର ପରିବେଶକୁ ଆବୁରିବାକୁ ଚାହଁ ସେଇଠିକି ! ଯଦି ତୁମର ଗଳ୍ପ ଷୋଳଅଣା ଆଭ୍ୟନ୍ତରିଣ, ଅର୍ଥାତ୍ ଚରିତ୍ର ବିଶେଷର ମନକୁ ଚଷିବା ପାଇଁ ଉଦ୍ଦିଷ୍ଟ ତା'ହେଲେ ସେ କଥା ଭିନ୍ନ, କିଂତୁ ସେଥିରେ ମଧ୍ୟ ସ୍ମୃତି ଥିବ, ତେଣୁ ଛୋଟବଡ଼ ଘଟଣାର ପରିବେଶ ଏବଂ ଯଦି ତୁମର ଗପ ଇତିହାସ, କିଂବଦନ୍ତୀ ଅବା ଭୌଗଳିକ ଅବସ୍ଥିତିକୁ ଆଶ୍ରୟ କରିଛି, ତା'ହେଲେ ରୀତିମତ ହୋମ୍‌ୱାର୍କ କରିବାକୁ ପଡ଼ିବ ଏଥିରେ ସଂଦେହ ନାହିଁ ।

ମୋଟ ଉପରେ କଥା ହେଲା ଯେ ପାଠକମାନଙ୍କୁ ବାସ୍ତବତାର ସ୍ୱାଦୁ ଚଖେଇ-ବାକୁ ହେଲେ ନିର୍ଦ୍ଦିଷ୍ଟରୁ ଅନିର୍ଦ୍ଦିଷ୍ଟକୁ ଓହ୍ଲେଇ ଆସିଲେ ଭଲ ଏବଂ ସେଥିପାଇଁ ତଥ୍ୟ ସଂଗ୍ରହ ଆବଶ୍ୟକ, ଯେପରିକି କଳ୍ପନାକୁ ଅତ୍ୟଧିକ ପରିଶ୍ରମ କରିବାକୁ ପଡ଼ିବ ନାହିଁ, ଯାହାକୁ ସେ ହୁଏତ ତୁଳେଇ ନ ପାରେ । ଅତଏବ କେଉଁ ରକ୍ତବୁହା ଗତିର

ସକାଳକୁ ଦର୍ଶାଇବାକୁ ହେଲେ ଯାଅ କେଉଁ ନିର୍ଦ୍ଦିଷ୍ଟ ନଈକୂଳକୁ, ଗଳିମୁଣ୍ଡକୁ, ଅବା ଯେ କୌଣସି ସଂଭବ୍ୟ ଘଟଣାସ୍ଥଳୀକୁ ଏବଂ ତା'ର ଟିକିନିଖି ଚତୁଃପାର୍ଶ୍ୱକୁ ଟିପିନିଅ। ଠିକଣା ବେଳେ କାହାକୁ ରଖିବ କାହାକୁ ଛାଡ଼ିବ ସେକଥା ପରେ। ମଂଦିର ଗାତ୍ରରେ ଖୋଳା ହୋଇଥିବା ମିଥୁନକୁ ହାଁ' କରି ଅନେଇଛି ବିଦେଶୀ ଟୁରିଷ୍ଟ୍, ମୁଗ୍ଧ ହୋଇ ଅନେଇଛି ଦେଶୀ ପ୍ରଣୟୀ ଏବଂ ଦୁହିଙ୍କ ପଛରେ ଧପାଲିଛି ଭିଖାରୁଣୀଟିଏ, ଯା'ର କି ତା'ର ବିହ୍ୱଳ ତେଣୁ ଉଦାର ଏବଂ ଅନ୍ୟମନସ୍କ ମୁଦ୍ରାଟିଏ ପାଇବ ବୋଲି। ଏଇ ଅପରୂପ ଦୃଶ୍ୟର ଉପାଦାନ ନେଇ ଅବା ତା'ର ପୃଷ୍ଠ ଭୂମିରେ ଗପଟିଏ ଲେଖିବାକୁ ଚାହଁ? ଭଲ। କିନ୍ତୁ ସମ୍ୟକ୍ ସୁଫଳ ପାଇଁ କୋଣାର୍କ କି ଖାଜୁରାହୋକୁ ଯାଅ ଏବଂ ପରିପାର୍ଶ୍ୱର ପରିବେଶକୁ ଟିପି ନିଅ। ସତେକି ତୁମକୁ ପ୍ରତ୍ୟକ୍ଷଦର୍ଶୀ ଭବେ ପଠା ହୋଇଥିଲା ସେଠିକି ଏବଂ ତୁମେ କେଉଁ ପଥର ପ୍ରତିମାକୁ ଆଉଜି ଚା' ପିଉଥିଲ ଏବଂ ଚୁପ୍‌ଚାପ୍ ଦେଖୁଥିଲ ବସି ଏଇ ବିଚିତ୍ର ଜଗତର ଯେତେକ ରଂଗ ଯେତେକ ଢ଼ଂଗ। ସେହିପରି କେଉଁ ବଜାର ବିପଣୀ ଯଦି ତୁମ ଗପର ପୃଷ୍ଠଭୂମି ହୁଏ, ତାହେଲେ କୌଣସି ଏକ ବଜାର ଦୃଶ୍ୟର ଏଣୁତେଣୁକୁ ସମ୍ମାନପୂର୍ବକ ଟିପି ନିଅ। ହଟଗୋଳ ଭିତରେ ଶୋଇ ରହିଥିବା ଷଣ୍ଢ ଯାଏଁ। ଷଣ୍ଢକୁ ମଧ୍ୟ ବିଶିଷ୍ଟ କରି ପାରିଲେ ଆହୁରି ଭଲ ଯଥା: ଏକ କୃଷ୍ଣକାୟ ବୁଢ଼ା ଷଣ୍ଢ, ନିର୍ଲିପ୍ତ ହୋଇ ରହିବାର ବୃଥା ଚେଷ୍ଟା, ଯେହେତୁ ଲେଂଜର ଆଖି ଓ ତା'ପଛରେ ଲାଗିଥିବା ଅଭଦ୍ର ଜଂତୁବିଶେଷ। ଅବଶ୍ୟ ପରିବେଶକୁ ଦୃଶ୍ୟରେ ଭାରାକ୍ରାନ୍ତ କରିବା ଏକାନ୍ତ ଅନୁଚିତ। ଅତି ସଜ୍ଜିତ ଡ୍ରଇଂ-ରୁମ୍‌ରେ ଅତିଥିକୁ ଗପ ଶୁଣେଇଲା ପରି। ତୁମେ ଭାବୁଛ ସେ ତୁମ ଗପ ଶୁଣୁଛି, କିଂତୁ ସେ ଦେଖୁଛି ତୁମର 'ସଂପତ୍ତି'କୁ, ସେଇଥିରେ ମଜ୍ଜି ଯାଇଛି। କିଂତୁ—ଯାହା ପୂର୍ବରୁ କହିଛି—ପ୍ରଥମେ ଟିପି ନିଅ, ପରେ ଠିକ୍ କରିବ କାହାକୁ ରଖିବ, କାହାକୁ ଛାଡ଼ିବ। ଲେଖୁ ଲେଖୁ ତୁମେ ଆପଣା ଛାଏଁ ଜାଣିପାରିବ ଯେ ଏଇଟିରେ ଗପର ମର୍ଯ୍ୟାଦା ବଢିବ, ଏଇଟି ବାହୁଲ୍ୟ ମାତ୍ର।

ଆବେଗର ସୃଜନଶୀଳତାକୁ ପରଖି ନିଆଗଲା। ଠିକ୍ ଅଛି। ଆବଶ୍ୟକ ଅନୁଯାୟୀ ଭୂଗୋଳ, ପରିପାର୍ଶ୍ୱ, ପରିବେଶକୁ ମଧ୍ୟ ଟିପି ନିଆଗଲାଣି; ଦରକାର ବେଳେ କାମରେ ଆସିବ। ଏଣିକି ଲେଖା ଆରଂଭ କରିବା? ବେଶ୍। କିଂତୁ ଛୋଟ ଗପର ପ୍ଲଟ୍ କଅଣ ହେବ ମୋଟାମୋଟି ଭାବି ନେଇଛ ତ? କାହିଁକି ନା ମନେରଖ ଯେ କଥାବସ୍ତୁ (theme) ପ୍ଲଟ୍ ନୁହେଁ; ତାକୁ ଟେକି ଧରିଥିବା କ୍ଷେତ୍ର, ଅବା ବାଂଧି ରଖିଥିବା ସୂତ୍ର। ପ୍ଲଟ୍‌ରେ ଥିବ କାହାଣୀ, କ୍ରମଶୀଳତା, ଉଠାଣି ଗଡ଼ାଣି ମୋଡ଼-ବାଂକର ଚହଟ ଚମକ ଅଂତିମର ଆନଂଦ ଯାଏଁ—ନା କଅଣ? ହେଉ, ଆଗାମୀ ଅଧ୍ୟାୟ କେତୋଟିରେ ତା'ର ବିସ୍ତୃତ ଆଲୋଚନା କରିବା।

ଗତଥର କହିଥିଲି ଯେ ପ୍ଲଟ କଥାବସ୍ତୁ ନୁହେଁ, ପ୍ଲଟ୍‌ରେ ଥିବ କାହାଣୀ, ଏଣୁ କ୍ରମଶୀଳତା, ଉଠାଣି ଗଡ଼ାଣି ଇତ୍ୟାଦି । ସେହେତୁ ପ୍ରଶ୍ନ ଉଠୁଛି ଯେ କୌଣସି ଏକ ଆବେଗ ସୃଜନଶୀଳ ବୋଲି ପରୀକ୍ଷିତ ଏବଂ ଅନୁମୋଦିତ ହେଲେ ମଧ୍ୟ କାହାଣୀର ଉପଯୋଗୀ ହୋଇ ପାରିବ କି ? ଏଥିର ବିଗ୍ରର ଆବଶ୍ୟକ । କାରଣ କାହାଣୀ ପାଇଁ ଅଂତତଃ ଗୁଖଣ୍ଡେ ଜାଗା ଦରକାର ଯେଉଁଠି ସେ ହାତଗୋଡ଼ ଚଳେଇ ପାରିବ, କଡ଼ ଲେଉଟେଇ ପାରିବ । ତା'ଛଡ଼ା ଅଂଗଗ୍ଳନାର ପ୍ରବୃତ୍ତି ଓ ଅବକାଶ କଥାବସ୍ତୁକୁ ଆବୁରିବା ପାଇଁ । ମନେରଖ ଯେ ଗପ ଯେତେ ଛୋଟ ହେଲେ ମଧ୍ୟ ବିଂଦୁରେ ପର୍ଯ୍ୟବସିତ ହୋଇ ପାରିବ ନାହିଁ ଏବଂ ଯେତେ ଛବିଳ ହେଲେ ମଧ୍ୟ ମାତ୍ର ଛବି-ଟିଏ ହୋଇ ରହି ପାରିବ ନାହିଁ । ତା'ପାଇଁ ଲୋଡ଼ା ଯତ୍ ସାମାନ୍ୟ ବିସ୍ତାର ଏବଂ ପ୍ରବାହ । ତେଣୁ ପ୍ଲଟ୍ କ'ଣ ହେବ କେମିତି ହେବ ଭବିବା ପୂର୍ବରୁ ଟିକିଏ ଚିଂତାକର ଯେ ଯାହା ଦେଖିଲ, ଶୁଣିଲ ଏବଂ ଅନୁଭବ କଲ, ତା'ର ରୂପାୟନରେ ଏହି ପ୍ରକାର ସଂଭବନା ଅଛି କି ନାହିଁ । ସେଇଠୁଁ ସ୍ଥିର କର ଯେ କାହାଣୀ ଦିଆ ଗପ ଲେଖିଲେ ଭଲ ହେବ ନା କବିତା, ଆଳାପ ଆଲୋଚନା, ରମ୍ୟରଚନା ଇତ୍ୟାଦି । ଏଇଠି ନିଜକୁ କେବଳ–ଗାଳ୍ପିକ ମନେ କରୁଥିବା ଲେଖକମାନେ ପଗ୍ଭରି ପାରନ୍ତି–ଆଜ୍ଞା ଆମକୁ ଯେଉଁ ଡାଂଗ୍ର ଭଲ ଲଗେ ଏବଂ ଯେଉଁଥିରେ ଆମେ ଅଭ୍ୟସ୍ତ, ଆମେ ତାକୁ ଛାଡ଼ି ଆଉ କେଉଁ-ଥିରେ ହାତ ଦେବୁ କାହିଁକି ? ତଦ୍ଦ୍ୱାରା ଉତ୍କର୍ଷ ହାସଲ କରିବାର ଉଚ୍ଚାଭିଳାଷ ବ୍ୟାହତ ହେବ ନାହିଁକି ? ଭଲକଥା । ତାହାହେଲେ ନିଜକୁ ପଗ୍ଭରିବାକୁ ପଡ଼ିବ ଯେ ଏଇ ଯେଉଁ ଅନୁଭବଟି ମନକୁ ଆସିଲା, ତାକୁଇ କେନ୍ଦ୍ରବିନ୍ଦୁ କରି ଗୋଟାଏ ପରିଧିର ଯୋଜନା କରି ହେବ କି ? ସେହେତୁ ଅଦ୍ୟାବଧି ଅଚିହ୍ନା (ହୁଏତ ଅରମା) ବାଟରେ ଗ୍ଲି ହେବ ତ ? ଅଧ୍ୟୟନର ଆବଶ୍ୟକତା ବିଷୟରେ ପୂର୍ବରୁ କହିଛି । କିନ୍ତୁ ଅଧ୍ୟୟନ କରିପାରିବାର ସୀମା ଅଛି, କାରଣ ଉଣା ଅଧିକେ ପ୍ରତ୍ୟେକ ଭରତୀୟ ଲେଖକର ସାଂସାରିକ କାମଧନ୍ଦା ଅଛି, ଯେଉଁଥିରୁ ଯଥେଷ୍ଟ ସମୟ ବଂଚେଇ ଏ ଦିଗରେ ଖର୍ଚ୍ଚ କରିବା ହୁଏତ ସମ୍ଭବ ନୁହେଁ । ତେଣୁ କଳ୍ପନାର ଆଶ୍ରୟ ନେବାକୁ ପଡ଼ିବ । ସ୍ମୃତିର ଖିଅକୁ ମୁଠେଇ ଧରି, ଅଚେତନ-ଅବଚେତନକୁ ଆବାହନ କରି, ମାଆ ସରସ୍ୱତୀଙ୍କୁ

ପ୍ରଣାମ କରି ଆଗେଇ ଯିବାକୁ ହେବ । ଯଦି ତୁମ ମନରେ ଦମ୍ଭ ଆସୁଛି ଯେ ତୁମର ଜନ୍ମ-ଜୀବିକାଗତ ସଂସ୍କାର ଏବଂ ଅଭିଜ୍ଞତାର ବଂଧନୀ ତୁମକୁ ବାଧାଦେଇ ପାରିବ ନାହିଁ, ତା'ହେଲେ ମୋର କିଛି କହିବାକୁ ନାହିଁ । ମହାନଗରୀରେ ମାଙ୍କଡ଼ନାଚ ଦେଖେଇ ପେଟ ପୋଷୁଥିବା ଦୟନୀୟ ବୁଢ଼ା, ବସ୍ତି କୁଡ଼ିଆର ସୁନ୍ଦରୀ ହେଲେ ନିଷ୍ପେଷିତା ମଳିନା, ଡ଼ିସ୍କୋ ସମାଜର ଶୂନ୍ୟଗର୍ଭା ନବୀନା, ଇତ୍ୟାଦି ଲୋଭନୀୟ ଚରିତ୍ରମାନଙ୍କୁ ନେଇ ଯାହା କିଛି ଦେଖିଲ, ଶୁଣିଲ ତାକୁ ନେଇ କାହାଣୀଟିଏ ଖଂଜି-ଦିଅ । ଖଂଜିବା ପାଇଁ କଳ୍ପନାରେ ମଜ୍ଜିଯାଅ ତାଙ୍କ ଘର ଦୁଆର, ବଜାରବିପଣୀ, ସାଂଗସାଥୀ, ମାଟିକାଦୁଅ ଅବା ଶଂଖ ମଲମଲ ସଂସାରରେ; କହିବାକୁ ଗଲେ ଅଂଗାଙ୍ଗୀଭୂତ ହୋଇ ମିଶିଯାଅ ତାଙ୍କ ସାଙ୍ଗରେ ନିର୍ଦ୍ଦିଷ୍ଟ ଭୂମିକାରେ ଅଭିନୟ କଲା ପରି । ସାର କଳ୍ପନା ହେଉଛି ଏଇ ମିଶିଯିବାର ସାମର୍ଥ୍ୟ, identification । ଏମିତି ଭବରେ ମିଶିବ ଯେ କାହାଣୀଟିଏ ଗଢି ହେବ, ଗୋଟିଏ ମୂଳରୁ ଆଉ ଗୋଟିଏ ଶେଷ ଯାଏଁ, ଏବଂ ମଝିରେ ତୁମ ଚରିତ୍ରମାନେ ଯାବତୀୟ ଚହଟଚମକ ଖେଳ କସରତ୍ ଦେଖେଇ ପାରିବେ ।

କଳ୍ପନାର ପ୍ରାଧାନ୍ୟ ନେଇ ସୁପ୍ରସିଦ୍ଧ ଲେଖକ ଉଇଲିୟମ୍ ଫକ୍‌ନର୍‌ଙ୍କର ଗୋଟିଏ ବକ୍ତବ୍ୟ ମନେପଡୁଛି । କହିଲେ ଯେ ଗପଟିଏ ଲେଖିବାକୁ ହେଲେ ତିନୋଟି ଝରଣା ତଳେ ପାତ୍ର ରଖିବାକୁ ପଡ଼ିବ—(୧) experience ଅର୍ଥାତ୍ ଅଙ୍ଗେ ନିଭେଇ-ଥିବା ଅନୁଭୂତି, ପ୍ରତ୍ୟକ୍ଷ ତଥା ପରୋକ୍ଷ; (୨) observation ଅର୍ଥାତ୍ ନିରୀକ୍ଷଣ ବହିର୍ଦୃଷ୍ଟି ଏବଂ ଅନ୍ତର୍ଦୃଷ୍ଟି ସମେତ; (୩) imagination ଅର୍ଥାତ୍ କଳ୍ପନା। ଏବଂ ସୁଖର ବିଷୟ ଯେ ସେ ମୋ ଭଳି ମଧ୍ୟବିତ୍ତ, ତେଣୁ ଅନୁଭୂତି କ୍ଷେତ୍ରରେ ସୀମାବଦ୍ଧ ଲେଖକ ପାଇଁ ଗୋଟିଏ ଆଶ୍ୱାସନା ବାଣୀ ଶୁଣାଇ ଯାଇଛନ୍ତି । ଯାହାର ତାତ୍ପର୍ଯ୍ୟ ହେଉଛି ଯେ ଅନ୍ଧ ଭଲ ଗୀତ ଗାଇଲା ପରି କିମ୍ବା ବଧୀର ଭଲଛବି ଆଂକିଲା ପରି ଏକରୁ ଊଣା ପଡ଼ିଲେ ଆନଠାରୁ ଅଧିକ ଅବଦାନ ଆଶା କରଯାଇ ପାରେ । ତାଙ୍କ ତୁଣ୍ଡ ସୁତୁଣ୍ଡ ହେଉ, କିନ୍ତୁ ତା'ଉପରେ ନିର୍ଭର ନ କରି ଆପଣା ଚେଷ୍ଟାରେ ନିଜକୁ ଦିଶି ଯାଉଥିବା ଅଭବଟିକୁ ଘୁଂଚେଇବା ଉଚିତ, ଯେତେଦୂର ସମ୍ଭବ । ଏବଂ ମୋର ମନେ-ହୁଏ ଯେ ବୁଦ୍ଧିଜୀବୀ ମଧ୍ୟବିତ୍ତ ଲେଖକ ପାଇଁ ନିରୀକ୍ଷଣ, ତହୁଁ ବଳି କଳ୍ପନାର ପହୁଂ-ଚକୁ ହିଁ ବଢ଼େଇବାକୁ ପଡ଼ିବ । ବଢେଇବ କେମିତି ? ମୋ ଜାଣିବାରେ ବଢ଼େଇବାର ଏକମାତ୍ର ଉପାୟ ହେଲା ଅଭ୍ୟାସ, ଦେବଦତ୍ତ ପ୍ରତିଭର ଅନୁଶୀଳନ, ଅଧ୍ୟବସାୟ...... ମନକୁ ପାଇବା ଯାଏଁ ।

ଯାହାହେଉ ପ୍ଲଟ୍‌ଟିଏ ଗ୍ରହି । କାହାଣୀ ଗଢିବାକୁ ହେବ । କେତେକ କହି-ଥାଆନ୍ତି ଯେ ଆଧୁନିକ ଗଳ୍ପରେ ପ୍ଲଟ ନ ଥିଲେ ଚଳିବ । କିନ୍ତୁ ତା'ର ପ୍ରକୃତ ଅର୍ଥ ହେଉଛି ଯେ ଆଜିକାର ସାହିତ୍ୟଧର୍ମୀ ଗଳ୍ପରେ ଘଟଣା-ଚରିତ୍ରର ଛନ୍ଦମନ୍ଦ ଦରକାର ନାହିଁ, ଯାହାକୁ ଆକ୍ଷରିକ ଅର୍ଥରେ "ପ୍ଲଟ୍" କୁହାଯାଏ, ଯେଉଁଥିରେ ଶେଷ ଯାଏଁ ପାଠକକୁ ଭୁଆଁ ବୁଲେଇବାର କୃତ୍ରିମ କାରସାଦି ଅବା ଷଡ଼ଯନ୍ତ୍ର ଆବଶ୍ୟକ ବୋଲି ଆମ ପୂର୍ବଜମାନେ ଧରିନେଇଥିଲେ । ଆଖି ଦୃଷ୍ଟିଆ ଘଟଣା ମଧ୍ୟ ନ ରହିଲେ ନାହିଁ । ସମାଧାନ ଉଦ୍ଦେଶ୍ୟରେ ମଧ୍ୟଦେଶୀୟ ଗଣ୍ଡଗୋଳ ବି' ନ ଥାଉ । କିନ୍ତୁ ରହି-ବାକୁ ବାଧ୍ୟ ଗୋଟିଏ ଆରମ୍ଭ, ଆରମ୍ଭରୁ ଗଢି ଉଠୁଥିବା ପ୍ରତିଶ୍ରୁତି ଏବଂ ତା'ର ପରିପୂରଣ । ପରିପୂରଣର ଅର୍ଥ ଉପସ୍ଥିତ କ୍ଷେତ୍ରରେ ଏବଂ ଆପାତତଃ ଗୋଟାଏ ଶେଷ କଥା, ନିର୍ଦ୍ଦିଷ୍ଟ ଘଟଣାକୁ ନେଇ ହେଉ, ଚରିତ୍ରକୁ ନେଇ ହେଉ, ବା ସାମୂହିକ ପରିବେଶ, ସମାଜ ଇତ୍ୟାଦିକୁ ନେଇ । ସେଥିରେ କଥାଟାକୁ ଛିଣ୍ଡେଇ ଦେଲପରି ପରିଣତି ନ ଥିଲେ ନାହିଁ, ଥିବ ଏକ ଆବିଷ୍କାର; ଆଲୋକ-ଦର୍ଶନ ନ ଥିଲେ ନାହିଁ, ଥିବ ଏକ ଉଜ୍ଜ୍ୱଳନ; ବିଜ୍ଞପ୍ତି ନ ଥିଲେ ନାହିଁ, ଥିବ ଏକ ବାର୍ତ୍ତା, ପ୍ରଗଲ୍‌ଭ ପ୍ରଶ୍ନୋତ୍ତରିତା ଚିନ୍ତାକୁ ଚିଆଁଇବା ପାଇଁ । ବରଂ ବୌଦ୍ଧିକତାର ତରଫରୁ ଏବଂ ଆଧୁନିକତାର ସନ୍ଦର୍ଭରେ କୁହାଯାଇପାରେ ଯେ ପରିଣତି, ଆଲୋକଦର୍ଶନ ଅବା ବିଜ୍ଞପ୍ତି ନ ରହିଲେ ଭଲ । ସେଥିର ବିସ୍ତୃତ ଆଲୋଚନା ପରେ କରିବା । କିନ୍ତୁ ଥିବ ଏଇ ଶେଷକଥାର ଜାଗ୍ରତି । ଯାହା କ୍ରମଶୀଳତାର କୃତି, ପ୍ରବାହର ପୂର୍ତ୍ତି...... ଅର୍ଥାତ୍ କାହାଣୀ ।

ସତକଥା କହିବାକୁ ଗଲେ ଏଇ ଆରମ୍ଭ-ଶେଷର ଗଢ଼ଣ ସଂଶୋଧିତ ଅର୍ଥରେ ଏଇ "ପ୍ଲଟ୍" ମଧ୍ୟ ଗୋଟିଏ ଆରୋପିତ କୃତ୍ରିମତା । କିନ୍ତୁ ଏଥିରୁ ନିସ୍ତାର ନାହିଁ । କାରଣ ଏଇତ କଳା ! ଯାହା କଳାବିତ୍ ହର୍‌ବର୍ଟ ରିଡ୍ କହିଛନ୍ତି—All art is an order to form ଅର୍ଥାତ୍ ପ୍ରତ୍ୟେକ କଳାରେ ଅଛି ଆକାରପ୍ରକାରର ହୁକୁମ୍ । ପ୍ରକୃତପକ୍ଷେ ଏଇ ଛାପିଛାପିକା ଗଣ୍ଡଗୋଳିଆ ସତେ ଅଳୀକ ଜଗତକୁ କଳିହେଉ ନାହିଁ, କିନ୍ତୁ ଆମର ବିଶ୍ୱାସ ଯେ ତା'ର ଅନ୍ତର୍ନିହିତ ସାମ୍ୟ-ସମନ୍ୱୟ ଅଛି, ଅର୍ଥ ଅଛି । ଏହି ବିଶ୍ୱାସ ହିଁ କଳାକାରର ବିଶ୍ୱବିଧାତାଙ୍କ ପ୍ରତି ସମ୍ମାନ । ଏବଂ ଏହି ବିଶ୍ୱାସର ବଳରେ ଲେଖକ ଭଗବାନଙ୍କୁ ନକଲ କରିବାର ସାହସ କରେ । ଘଟଣା—ଚରିତ୍ରକୁ ନେଇ ଗୋଟିଏ କାହାଣୀ ତିଆରି କରେ । ପୂର୍ବ କଥାକାରମାନଙ୍କ ପରି ଆମେ ପରିଣତି ଆଦିର ନିର୍ଣ୍ଣୟକୁ ମାନିବାକୁ ନାରଜ, କାରଣ ଆମେ ବାସ୍ତବତାର ପୂଜାରୀ । କିନ୍ତୁ

ଯେହେତୁ ଆମେ କଳାକାର, ଏଇ ଆରମ୍ଭ-ଶେଷର ଗଢ଼ଣକୁ ଛାଡ଼ିଦେଲେ ନିଜକୁ ଅବା ପାଠକକୁ ସୁଖ ଦେଇହେଉ ନାହିଁ । ଶୂନ୍ୟତାବୋଧ ମାଡ଼ି ପଡୁଛି । ଏଇ ତ ଆମ ଦୁରବସ୍ଥା କିନ୍ତୁ ଏଥିକୁ ଉପାୟ କଅଣ ? ଦାର୍ଶନିକ ହସିଲେ ହସୁ, ଆମେ କ'ଣ କରି ପାରିବା ନାହିଁ ଯେ ଯେତେହେଲେ ଏଇ ଗଠିତ ଆରୋପିତ ନକଲବାଦି ନେଇ ଆମେ ସୁଖୀ ଏବଂ ମହାଶୟ ଦୁଃଖୀ ?

କେବଳ ସେତିକି ନୁହେଁ, ଗାଳ୍ପିକର ଆଉ ଏକ ଦାୟିତ୍ୱ ଅଛି ଯାହା ଔପ-ନ୍ୟାସିକ ଇଚ୍ଛାକଲେ ଆଡ଼େଇ ଦେଇ ପାରେ । ଆରଂଭ-ଶେଷର ଗଢ଼ଣ ବଜାୟ ରଖି ମଧ୍ୟ ସେ ଦର୍ଶାଇପାରେ କେବଳ ଏକ କ୍ରମ, ଯେପରିକି ବ୍ୟକ୍ତି, ଗୋଷ୍ଠୀ ବା ସମାଜର ଏକ ଜୀବନ-ପର୍ଯ୍ୟାୟ "a phase of life" କିମ୍ବା ହୁଏତ ପର୍ଯ୍ୟାୟରୁ ଊଣା, ମାତ୍ର ଚେନାଏ, "a slice of life" ଫୁଟି ଉଠିବ କିନ୍ତୁ ଗାଳ୍ପିକତାର କ୍ଷୁଦ୍ର ପରି-ସର ଭିତରେ କେଉଁ ଏକ ଲମ୍ବା ପଣତ ବିଛେଇ ପାରିବ ନାହିଁ, ଯାହା ସବୁ ଆଡ଼କୁ ପାଉଛି ବୋଲି ମନେହେବ, ଏବଂ ବିସ୍ତାରିତ ଧାରଣା-ଅନୁଭବର ଆବେଗରେ ପାଠ-କର ଆଖି ବୁଜିହୋଇ ଆସିବ । ଅଗତ୍ୟା ତାକୁ ତରତର ହୋଇ କାନି ଖଣ୍ଡକ ଗୁଡ଼େଇ ଆଣିବାକୁ ପଡ଼ିବ, ନହେଲେ ସେ ଲେଗ୍ରକୋଗ୍ର ହୋଇ ରହିଯିବ । ଏହେତୁ ଗଳ୍ପର ଗଢ଼ଣରେ ଏକପ୍ରକାର ବର୍ତ୍ତୁଳତା ରହିବା ଅନିବାର୍ଯ୍ୟ । ଏହି ସମ୍ପର୍କରେ ଜନ୍ କୋର୍ନିସ୍ ନାମକ ଜଣେ ବିଶିଷ୍ଟ ସମୀକ୍ଷକ ଚପଳତାର ଭଙ୍ଗୀରେ କହିଛନ୍ତି—A good story is not a''slice of life'' Call if a roll if you must, but a whole roll. ଅର୍ଥାତ୍ ଭଲ ଗଳ୍ପଟିଏ ଜୀବନ-ପାଉଁରୁଟିର ଟୁକୁଡ଼ାଏ ନୁହେଁ, କହିଲେ କୁହ ଗୋଲେଇ ପାଉଁରୁଟି, ସମ୍ପୂର୍ଣ୍ଣ ଗୋଲ୍ । ହେଉ । ଏଇ ସମ୍ପୂର୍ଣ୍ଣତାର ଦାୟିତ୍ୱକୁ ଡରିବ କାହିଁକି ? ଏଇଥିରେ କ'ଣ ଶେଷକଥାର ଜାଗୁତି—ମୁନଟିଏ, ମାନେଟିଏ, ଏକ ଅପରୂପ ଝଲକର ଆନଂଦ ଆଣି ଦେଇ ହେବ ନାହିଁ ? ଏଇ ତ ଗାଳ୍ପିକର ଚ୍ୟାଲେଂଜ୍ ତା'ର ବାହାଦୂରୀ !



ଆରଂଭ-ଶେଷ ନେଇ ଗୋଲେଇ ବସ୍ତୁଟିଏ, ଏଇ ହେଲା ଆମ ଗପ । ତେଣୁ ତା' ପାଇଁ ଗୋଟିଏ ଫର୍ମା ଦରକାର । ଗତାନୁଗତିକ ଅର୍ଥରେ ପ୍ଲଟ୍ ନ ହେଲେ ମଧ୍ୟ ଘଟଣା-ଚରିତ୍ର-ପରିବେଶର ଗୋଟିଏ ନକ୍ସା, ଯାହାକୁ ମୋଟାମୋଟି ଆଗରୁ ଭାବି ନେଇଥିଲେ ଭଲ । ଔପନ୍ୟାସିକ ଏ ବିଷୟରେ ହେଳାକଲେ ଚଳିବ । କାରଣ ସେ ମଝି ଦରିଆରେ ମଂଗ ମୋଡ଼ି ପାରିବ । ଲେଖୁ ଲେଖୁ ଯଥାର୍ଥରେ ଭାବି ପାରିବ ଯେ ଯେଉଁ ଭାବରେ ଲେଖି ଆସିଲିଣି ଏତେବେଳଯାଏଁ, ବର୍ତ୍ତମାନ ଦେଖାଯାଉଛି ଉତ୍ତରକୁ ନ ଯାଇ ଦକ୍ଷିଣକୁ ଗଲେ, ନାୟକ ନଂବର ଏକ ବଦଳରେ ନଂବର ଦୁଇକୁ ପ୍ରୋତ୍-ସାହନ ଦେଲେ, ଏପରିକି ଶେଷକଥାଟିକୁ ସୁଖାତ୍ମକ ନ କରି ଦୁଃଖାତ୍ମକ କଲେ ଭଲ-ହେବ ପର । କିନ୍ତୁ ଗାଳ୍ପିକ ପକ୍ଷରେ ଏହି ପ୍ରକାର ସୁବିଧାସୁଯୋଗର ଏକାଂତ ଅଭାବ । ମୂଳରୁ ଦରିଆ ନାହିଁ, ଅଛି ମାତ୍ର ପାଣିଧାରଟିଏ, ଗ୍ରହୁଁ ଗ୍ରହୁଁ ମୁହାଣରେ ଢ଼ାଳି ହୋଇଯିବ ବୋଲି ମନେହେଉଛି । ତେଣୁ ଅଧାବାଟରେ ମଙ୍ଗ ମୋଡ଼ିଲେ ଯିବ କେଉଁଠିକି ? ପଛକୁ ? ଅନ୍ୟ କେଉଁ ମୁହାଁଣ ଖୋଜିବା ପାଇଁ ? ସେଥିରେ ଆହୁରି କେତେ ସମୟ ଲାଗିବ, ଲେଖାଟିର କାୟାକଳେବର କେତେଦୂର ଲମ୍ବିଯିବ ବଢ଼ିଯିବ ତା'ର ବିଗ୍ରର ଛଡ଼ା ପ୍ରଶ୍ନ ହେଉଛି—ଏମିତି ପଇଁତରା ମାରିଲେ ଗପ ଆଉ ଗପ ହୋଇ ରହିବ ତ ? ତା'ର ସ୍ୱକୀୟ ଚରିତ୍ର ବଦଳି ଯିବ ନାହିଁ କି ?

ଏଇ ଏକମୁଖୀ ଭାବର ଦାୟିତ୍ୱ ସ୍ୱୀକାର କରିବାକୁ ହେଲେ ଆଗତୁରା ନକ୍ସା-ଟିଏ ଆଙ୍କିବା ଦରକାର । ତାକୁ ପୂର୍ଣ୍ଣାଙ୍ଗ ନ କଲେ ନାହିଁ । ବରଂ ଲେଖନୀକୁ ଯତ୍-ସାମାନ୍ୟ ଖେଳିବାକୁ ଦିଅ । ଅର୍ଥାତ୍ ଲେଖୁ ଲେଖୁ ତା'ର ଦୃଶ୍ୟଦେଖା, କଥାକୁହା, ଅବା ଭାବଭାବନାର କଉତୁକ ବୋହିପଡୁ ଟିକିଏ, ତା'ହେଲେ ଲେଖାଟି ସ୍ୱୟଂଗ୍ରଳିତ ଏବଂ ସାବଲୀଳ ମନେହେବ—ଯେପର୍ଯ୍ୟନ୍ତ ଲଗାମଖଣ୍ଡନ ରହିଛି ତୁମ ହାତରେ ଏବଂ ସେଥିରେ ଥିବା (ଅଂତତଃପକ୍ଷେ) ତିନୋଟି ରଜ୍ଜୁର କ୍ଷମତା । ଦେଶକାଳପାତ୍ର ଛଡ଼ା କାହାଣୀର (୧) ଦିଗବିଗ୍ରର, (୨) ରସବିଗ୍ରର ଏବଂ (୩) ଶେଷକଥାର ସ୍ୱଷ୍ଟତା ।

ଦିଗବିଗ୍ରରର ଅର୍ଥହେଲା ଏଇ ଯେ ନିର୍ଦ୍ଦିଷ୍ଟ ଘଟଣା-ପରିବେଶକୁ ଆଶ୍ରାକରି ତୁମ ଚରିତ୍ରମାନେ କେଉଁ ଦିଗର ଦିହୁଡ଼ି ଜଳାଇବେ ବୋଲି ସ୍ଥିର କରୁଛ । କେବଳ

ଉପସଂହାର ଏହି ପ୍ରକାର ବୋଲି ଧାର୍ଯ୍ୟକଲେ ଯଥେଷ୍ଟ ନୁହେଁ । ସେଥିରେ ଥିବା ଦିଗ୍‌ଦର୍ଶନକୁ ମଧ୍ୟ ସବୁବେଳେ ରଖିଥିବ ଆଖି ସାମ୍‌ନାରେ, ଯେପରିକି ତୁମ କଥା-କୁହା ପୂରାପୂରି ମେଳ ଖାଇଯିବ ତା'ସଙ୍ଗରେ । ପାଠକ ତୁମର ଅଭିମୁଖ୍ୟକୁ ଭୁଲ୍ ବୁଝିବ ନାହିଁ, କିମ୍ବା "କେଉଁଠି କ'ଣ ଖାପ୍ ଖାଉନାହିଁ" ବୋଲି ତୁମ ଉପରେ ଅସନ୍ତୁଷ୍ଟ ହେବ ନାହିଁ । ଧର ଗୋଟିଏ ସରଳ-ସାଧାରଣ ପ୍ରେମଗଳ୍ପ । ନାୟକ ଓ ନାୟିକା ଠିକଣା ହୋଇଗଲେଣି । ଏବଂ ତୁମେ ତାଙ୍କ ଲୀଳାଖେଳାର ଗାଆଁଗୋହିରୀ ଅବା କମନ୍‌ରୁମ୍ ତଥା ତା'ର ପରିଭାଷାକୁ ବେଶ୍ ଚିହ୍ନିଗଲଣି । ତା'ଛଡ଼ା ତୁମର ଇଚ୍ଛା ଯେ ସେମାନେ ଗପଟାଯାକ ଯାହା କରନ୍ତୁ ପଛେ ଶେଷକୁ ପ୍ରେମ ଆଗରେ ହାର୍ ମାନିବେ । ଉତ୍ତମ । କିନ୍ତୁ ଉକ୍ତ ପରାଜୟ-ସ୍ତମ୍ଭକୁ ଛୁଇଁବା ପାଇଁ ଅନେକ ରାସ୍ତା ପଡ଼ିଛି, ବିଭିନ୍ନ ଦିଗ ଓ ଦିଗନ୍ତର ନିମଂତ୍ରଣ । କେଉଁଟି ସର୍ବୋତ୍କୃଷ୍ଟ ବୋଲି ଭାବୁଛ ? ଆସିବ କି ତୃତୀୟ ବ୍ୟକ୍ତି, ଅବୁଝାମଣାର ଗଣ୍ଡଗୋଳ, ତହୁଁ ଲୁହଧୁଆ ପୁନର୍ମିଳନ ? ଇଏ ହେଲା ହେଜ୍ଜୀଫିଲ୍ମସୁଲଭ ସହଜ ପନ୍ଥା । ତାକୁ ଛାଡ଼ି ଗୋଟିଏ ନୂଆ ବାଟ ଧରିବାକୁ ଚାହଁ ? ତା'ହେଲେ ଏଇ ତ୍ରିଭୁଜ ଫର୍ମୁଲାକୁ ବାଦ୍ ଦେଲେ କେମିତି ହେବ ? ଧର କେବଳ ସେଇ ଟୁଆଁଟୁଇଁ ଦି'ଜଣ ଜୀବନର ନାନାଦି ଝୁଂପାଝୁଂପି କାମୁଡାକାମୁଡ଼ି ପରେ ଏକାଠି ହେଲେ ସଞ୍ଜବେଳକୁ । ତହୁଁ ସତସତିକା ପ୍ରେମ କଲେ, ଯାହା ପୂର୍ବରୁ କେବେ କରି ନ ଥିଲେ । ଆଧୁନିକ ଚିଂତାଚେତନାର ପରିପ୍ରେକ୍ଷୀରେ ଏଇଟି ଅଧିକ ବାସ୍ତବ ବୋଲି ମନେହେଉଛି—ନା' କ'ଣ ? ରୁହ, ତିକ୍ତତାର ମାପକାଠିରେ ତୁମେ ଆହୁରି ବାସ୍ତବ ହୋଇ ପାରିବ । ଶେଷକୁ ଯେଉଁ ମିଳନ ହେଲା ଏବଂ ପ୍ରେମର ବିଜୟସ୍ତଂଭ ଅର୍ଥାତ୍ "ଇଗୋ"ର ପରାଜୟ ସ୍ତଂଭକୁ ଛୁଇଁଲେ ଦି'ଜଣଯାକ, ତାକୁ ନିପାରିଲାର ସାଲିସ୍ ରୂପେ ସୂଚାଇଲେ କେମିତି ହେବ ? ସେଇ ଯଦି ହୁଏ ତୁମ ଶେଷକଥାର ଜାଗୃତି, ଆବିଷ୍କାରର ଆଖିମିଟିକା ? ଏଇଥିରୁ ବୁଝ ଯେ ଘଟଣାପ୍ରବାହ ଏବଂ ମୁଖ୍ୟ ଚରିତ୍ରମାନଙ୍କୁ ନ ବଦଳେଇଲେ ମଧ୍ୟ ସେଇଥିରେ ବିଭିନ୍ନ ଦିଗ୍‌ଦର୍ଶନର ସମ୍ଭାବନା ରହିଛି । ଯଥା ରୋମାଣ୍ଟିକ , ଆଶାବାଦୀ, ତିକ୍ତ ଇତ୍ୟାଦି । ଏଥିରୁ ତୁମକୁ କେଉଁଟି ସୁହାଇବ ଆଗରୁ ଠିକ୍ କରି ନେଲେ ଭଲହେବ ନାହିଁ କି ? କାରଣ ସେହି ଅନୁଯାୟୀ ତୁମର ଭାଷା, ଯୁକ୍ତି, ଏପରିକି ପ୍ରକୃତି-ପରିବେଶକୁ ସଜାଡ଼ିବାରେ ସୁବିଧା ହେବବୋଲି ମୋର ଧାରଣା ।

ରସ ବିଚାର ହେଉଛି ଏଇ ଯେ ତୁମେ କଥାଟାକୁ କେଉଁ ସ୍ୱରରେ ଶୁଣେଇବାକୁ ଚାହଁ, କେଉଁ ରସରେ ବୁଡେଇ ତା'ର ସ୍ୱାଦୁ ଚଖେଇବାକୁ ଚାହଁ । ଧର ତୁମ

ଦିଗ୍‌ଦର୍ଶନ ହେଲା ରୋମାଣ୍ଟିକ୍ । ତା'କୁ ଗୁରୁଗମ୍ଭୀର ସ୍ୱରରେ କହିହେବ, ଯେପରିକି ମନେହେବ ଯେ ପ୍ରଣୟୀଯୁଗଳ ସଦାସର୍ବଦା ଲଢୁଛନ୍ତି ଭାଗ୍ୟ ସାଗରେ, ସମାଜ ସାଙ୍ଗରେ, ଅବା ଖଳନାୟକର କାରସାଦି ସାଙ୍ଗରେ । ଶେଷକୁ ସେମାନେ ଏକାଠି ହେଲେ, ଏହାର ଅର୍ଥ ତାଙ୍କୁ ବୀରତ୍ୱର ପୁରସ୍କାର ମିଳିଲା । ପୁଣି ରୋମାଣ୍ଟିକ୍ ପଣକୁ ଅକ୍ଷୁଣ୍ଣ ରଖି ସ୍ୱରଟିକୁ କାରୁଣ୍ୟ କରିହେବ; ଯେପରିକି ମନେହେବ—ଆହା, ବିନା ଦୋଷରେ ବିଚରା କେଡ଼େ କଷ୍ଟ ପାଉଛନ୍ତି ! ଏବଂ ସେଇ କଥାଟାକୁ ଏପରିଭାବରେ କହି ହେବ ଯେ "ବିଚରା"ଙ୍କ ନିର୍ବୋଧତା ପ୍ରତି ହସିବାକୁ ଇଚ୍ଛାହେବ, ସତେକି ସେମାନେ ପାଠକ—ଲେଖକ ପରି ବୁଦ୍ଧିମାନ ହୋଇଥିଲେ ତାଙ୍କୁ ଏମିତି ହଇରାଣ ହେବାକୁ ପଡି ନ ଥାଆନ୍ତା । ତଥା ତିକ୍ତତାକୁ ମଧ୍ୟ ବୀର ରସରେ, କରୁଣ ରସରେ ଅବା ହାସ୍ୟ-ରସରେ ବୁଡ଼େଇ ଦେଇ ହେବ । ତେଣୁ ଠିକ୍ କର ଯେ ଏଇ ଗପଟି ପାଇଁ କେଉଁ ରସ ଅଧିକ ଉପଯୋଗୀ ବୋଲି ମନେହେଉଛି । ପାତ୍ରପାତ୍ରୀଙ୍କ ତଥା ତୁମ ନିଜର ଚରିତ୍ର ଦୃଷ୍ଟିରୁ ଅଥବା ଅନ୍ୟ ଯେକୌଣସି କାରଣରୁ । ଅବଶ୍ୟ ପ୍ରତ୍ୟେକ ଗପକୁ ସବୁ ପ୍ରକାର ରସରେ ବୁଡ଼େଇ ଦେଇହେବ ନାହିଁ । ଯଥା ରୋମାଣ୍ଟିକ୍ ଗପକୁ ବିଭତ୍ସ ରସ ମୋଟେ ଖାପ୍ ଖାଇବ ନାହିଁ । ତଥାପି ପ୍ରତ୍ୟେକର ପ୍ରତିଷ୍ଠା ପାଇଁ ଏକାଧିକ ତୂର୍ଯ୍ୟର-ସଙ୍ଗୀତର, ବାହୁନାର ଅବା ସ୍ତୋତ୍ରପାଠର—ସ୍ୱାଧୀନତା ଅଛି ତୁମଠେଇଁ । ଆଜି କାହାକୁ ଆଦରିବ ତୁମ ଉପରେ ନିର୍ଭର କରେ ।

ବୟସ ବଢିଲାରୁ ଏବଂ ଲେଖାଲେଖିରେ କିଛି ବାଟ ଆଗେଇ ଗଲା ପରେ ତୁମେ ନିଜେ ଜାଣି ପାରିବ ଯେ ଯେହେତୁ ତୁମେ ବ୍ରହ୍ମା ନୁହଁ, ଜନ୍ମଜୀବିକା ସମାଜ-ସଂସାର ନେଇ ଗୋଟିଏ ଧରଣର ଭାବଗ୍ରସ୍ତ ମଣିଷ, ତୁମେ ଯଥାକ୍ରମେ କେତୋଟି ନିର୍ଦ୍ଦିଷ୍ଟ ଦିଗଦିଗନ୍ତର ପଥିକ ଏବଂ କେତୋଟି ନିର୍ଦ୍ଦିଷ୍ଟ ରସର ଆଗ୍ରହୀ ହେବାକୁ ବାଧ୍ୟ । ତା'କୁ ଅସ୍ୱୀକାର କରି ମୁଁ ସ୍ରଷ୍ଟା, ମୁଁ ଇଚ୍ଛାକଲେ ପାଠକକୁ ଡରେଇ ପାରିବି, ହସେଇ ପାରିବି, କନ୍ଦେଇ ପାରିବି, ଚିନ୍ତାର ହଟହଟାରେ ପକେଇ ପାରିବି ଏହିପ୍ରକାର ଦାମ୍ଭିକତା ଆପେ ଆପେ ଝଡ଼ି ଯିବ । କିନ୍ତୁ ଆସନ୍ତା ଅବସ୍ଥାକୁ ଅପେକ୍ଷା ନ କରି ସଚେତନ ମନରେ ପ୍ରତ୍ୟେକ ଗପର ଦିଗ ଓ ରସ ବାଛି ନିଅ ଓ ମୂଳରୁ ଏଇ ହେଲା ମୋର ସୁପାରିଶ ।

ଏଇଠି ମୋର ଗୋଟିଏ ସ୍ୱୀକାରୋକ୍ତି ଶୁଣାଇବାକୁ ଅଛି । ମୋର "ମଣିହର" ଗପ କଥା ପୂର୍ବରୁ କହିଛି । କାଳ ନିଷ୍ଠୁର, ଏତେ ନିଷ୍ଠୁର ଯେ ଅବିଳମ୍ବେ

ଜନନୀର ଶୋକକୁ ମଧ୍ୟ ଲିଭେଇ ଦିଏ ସୃଷ୍ଟିର ଉଦ୍ଦେଶ୍ୟ ସାଧନ କରିବା ପାଇଁ ଏଇ ହେଉଛି ତା'ର ସୁବୋଧ ଦିଗ୍‌ଦର୍ଶନ । କିନ୍ତୁ ତା'ଛଡ଼ା ମୁଁ ଜାଣିଶୁଣି କରୁଣ ରସର ପ୍ରାଧାନ୍ୟ ଆଣି ଦେବାକୁ ଚାହିଁଲି । ସତେକି ଆଉ କାହାକୁ କନ୍ଦେଇ ପାରିଲେ ଯାଇଁ ମୋର ଲୁହଶୁଖା ଉଦ୍ୟମ ସାର୍ଥକ ହେବ । ବିଶେଷତଃ ଶେଷ କେତୋଟି ଧାଡ଼ି ଏମିତି ଥିଲା ଯେ ମୋର କେତୋଟି ବନ୍ଧୁ ତାକୁ ପଢି କାନ୍ଦି ପକେଇଲେ ବୋଲି କୁହନ୍ତି । ସେହେତୁ ମୁଁ କୃତକୃତ୍ୟ ହେଲି । କିନ୍ତୁ ମୋର ଆଉ ଗୋଟିଏ ଗପ ଯେତେ ଲୋକପ୍ରିୟ ହେଲେ ମଧ୍ୟ ମୋତେ ବାରମ୍ବାର କହି ଆସିଛି ଯେ ମୁଁ ତାକୁ ଗଢିଛି ସିନା, ସେ ପ୍ରକୃତରେ ମୋର ନୁହେଁ । ଗପଟିର ନାଆଁ "ଗତି କୁକୁର" । ଏଥିରେ ମୁଁ ନାୟକ ଶୀତଳବାବୁଙ୍କୁ କେବଳ ଚିଡ଼େଇବାକୁ ଚାହିଁଥିଲି । ମୋର ଅନ୍ୟାନ୍ୟ ଗପ ପରି ଶେଷରେ ରାଶି ରାଶି କରୁଣା ଖଞ୍ଜି ଦେବାକୁ ବସିଥିଲି, ଯେମିତିକି ପାଠକ ଜାଣିବ ଯେ ଚରିତ୍ରଟି (ଯେ ମୋରି ପରି, ମୋରି ଶ୍ରେଣୀର ସଭ୍ୟ) ଭୀରୁ ହେଲେ ମଧ୍ୟ ଦୟନୀୟ ନୁହେଁ, ସ୍ୱାର୍ଥୀ ହେଲେ ମଧ୍ୟ ନିଉଛୁଣା ନୁହେଁ, କାରଣ ସେ ତା'ର ଡେଣା ଝାଡ଼ିଥିଲା ଉଡ଼ିବ ବୋଲି । କିନ୍ତୁ ଲେଖୁ ଲେଖୁ ଅମଙ୍ଗଳତନ୍ତ୍ରର ଆତ୍ମଗ୍ଲାନି ବଳେଇ ପଡ଼ିଲା ମୋତେ, ନା ଶାସ୍ତ୍ରୀୟ ଭାଷାରେ ମୁଁ ମୋର "ସ୍ଥାୟୀ ଭାବକୁ" ମୁଠେଇ ଧରି ପାରିଲି ନାହିଁ, ଅସ୍ଥାୟୀ "ବିଭାବରେ" ଭାସିଗଲି, ସେଇଥିପାଇଁ ରସର ଗଣ୍ଡଗୋଳ ହେଲା, କି ଆଉ କଅଣ ହେଲା ଭଗବାନ୍ ଜାଣନ୍ତି—ଶୀତଳବାବୁ କେବଳ ଦୟନୀୟ ନୁହେଁ, ସତସତିକା ଧେଡ଼ି କୁକୁର ପରି ଦିଶିଲେ, ଏବଂ ଉଚ୍ଚମନ୍ୟା ପତ୍ନୀଙ୍କ ଠାରୁ ଯାବତୀୟ ଭର୍ତ୍ସନା ଶୁଣିଲେ । ସତେ ନିଷ୍କ୍ରିୟତାର ପିତୁଳାଟିଏ ! ପ୍ରାୟ ଏକାଭଳି ଗପ "ଗୋଟିଏ ଲାଲ୍ ସନ୍ଧ୍ୟା"ର ଉପେନ୍ଦ୍ର ଦାସକୁ ମଧ୍ୟ ମୁଁ ଯଥେଷ୍ଟ ଥଟ୍ଟା କରିଛି, କେମିତି ବାବୁ—ବିପ୍ଳବୀ ହେବାକୁ ଯାଇଁ ଫେଲ୍ ମାରିଲେ । କିନ୍ତୁ ତା'ର ଖଣ୍ଡିଉଡ଼ା ଥିଲା, କିଛିଟା ଉର୍ଦ୍ଧ୍ୱମୁଖୀ ଆବେଗ ଓ ଉଦ୍ୟମ । ସେଇଥିପାଇଁ ସେ ଭୀରୁ ଅବା ସ୍ୱାର୍ଥୀ ହେଲେ ମଧ୍ୟ ଅଣହିରୋର ଷ୍ଟେରିଓଟାଇପ୍ ବୋଲି ଲାଗୁ ନାହିଁ । ଲାଗୁଛି କି ?

ଅତଏବ ମୋର ଏଇ ସାନକୁହା ଯେ ନିଜ ଅଜାଣତରେ ମୋରିପରି ଏମିତି ଭୁଲ୍ କର ନାହିଁ । ନ ହେଲେ ପଛକୁ ଦିଲିଗିଲି ହେବ ସିନା !

ତୃତୀୟରେ ଶେଷକଥାର ସ୍ୱଷ୍ଟତା । ଆଗତୁରା ନକ୍ସାର ଅନ୍ୟୂନ ଅନ୍ୟତମ ଆବଶ୍ୟକତା । ଏଇଠି ପୁଣି ଥରେ କହୁଛି ଯେ ମୁଁ କେବଳ ନିଜ ଅଭିଜ୍ଞତାରୁ ଏହି ପ୍ରକାର କୌଶଳ ଶିଖାଉଛି ତୁମକୁ । ଆଉ କେଉଁ ଲେଖକର ଭିନ୍ନ ପ୍ରକାର ଅଭିଜ୍ଞତା (ଅବା ଦୁର୍ବଳତା) ଥାଇପାରେ । ପଣ୍ଡିତମାନଙ୍କ କଥା ଛାଡ଼ିଦିଅ । ତେବେ ମୁଁ ଦେଖିଛି ଯେ

ଶେଷକଥାର ନିଖୁଣ ଚେହେରା, ଶେଷପଦ କେତୋଟି, ସେଥିରେ ବଜ୍ରବିଦ୍ୟୁତର ଚମକ ଥାଉ ବା ଦୁଃଖଦ ଫୁମ୍‌କି ଆଓ୍ୱାଜ୍, ତାକୁ ଆଗରୁ ମନ ଭିତରେ ସଜାଡ଼ି ଦେଲେ ଗପର ଗୋଲେଇ ଛାଏଁ ଛାଏଁ ବାନ୍ଧି ହୋଇଯାଏ । ଅର୍ଥାତ୍ ଏକା ସାଙ୍ଗରେ ଆରମ୍ଭ ଓ ଶେଷକୁ ମୁଠେଇ ଧରିଲେ ସୂତା ଅଡୁଆତଡୁଆ ହୁଏ ନାହିଁ ବୋଲି ମୋର ବିଶ୍ୱାସ । ବିକ୍ଷିପ୍ତ, ଅନିର୍ଦ୍ଦିଷ୍ଟ ଏବଂ ହୁଏତ ଅର୍ଥହୀନ ସଂସାରର କାରବାର ଉପରେ ଯେଉଁ ପ୍ରକାର ରସ ଓ ଦିଗ୍‌ଦର୍ଶନର ଆବାହନ କରି ପ୍ଲଟଟିଏ ଥାପିଦେଲି , ହରବର୍ଟ ରିଡ୍‌ଙ୍କ ଭଷାରେ ଗଢଣର ହୁକୁମ୍ ଛାଡ଼ି ଦେଲି, ସେଣିକି ସେଇ ଛାଞ୍ଚ ଉପରେ ଧାଡ଼ିପରେ ଧାଡ଼ି ଦିନ ପରେ ଦିନର କାଦୁଅ ଲେସିବାରେ, ରଙ୍ଗ ଲେପିବାରେ, ଆଖି ମୁହଁ ନାକ ଗଢିବାରେ, ଏବଂ ଯଥାକ୍ରମେ ତାକୁ ଜୀବନ୍ୟାସ ଦେବାରେ ଅସୁବିଧା ହୁଏ ନାହିଁ ପରା !

ଗପଟିଏ ଲେଖାଯାଉ ଏଥର । କିନ୍ତୁ ମନେରଖ ଯେ ତା'ର ଜନ୍ମ ତୁମ ହେତୁ ଏବଂ ମୁଖ୍ୟତଃ ତୁମ ପାଇଁ (ତୁମକୁ ଆନନ୍ଦ ଦେବା ପାଇଁ ଅବା ତୁମର ଦୁଃଖ ଘୁଞ୍ଚାଇବା ପାଇଁ) ହେଲେ ମଧ୍ୟ ତା'ର ସମ୍ୟକ୍ ସଫଳତା ଅନ୍ୟମାନଙ୍କୁ ନେଇ । ଅନ୍ତତଃ ତୁମ ଶ୍ରେଣୀର ଲୋକମାନଙ୍କ ଠାରେ ଥିବା ବିଭିନ୍ନ ମନୋବୃତ୍ତିର ଆଗ୍ରହକୁ ବାନ୍ଧି ରଖିବାରେ । ଏହି ଦୃଷ୍ଟିରୁ ପାଠକର ମନକୁ ସମ୍ମାନର ସହ ଭୁଲେଇବାକୁ ପଡ଼ିବ, ଯେମିତିକି ସେ ତୁମ କଥାଟିକୁ ଶୁଣିବ ଓ ସମ୍ମାନ ଦେବ । ତେଣୁ ଦେଖ ଯେମିତି—

କ) ଗପଟିକୁ ପଢିଲେ ସୁଖ ଲାଗିବ । ଯେତେ ଉଚ୍ଚ ଦରର ଗପ ହେଉ ନା କାହିଁକି, ତା'କୁ ପଢୁ ପଢୁ ଆଖିକୁ ନିଦ ଲାଗି ଆସିଲେ, ତା'ର ଭବିଷ୍ୟତ କଅଣ ?

ଖ) ମିଛ ଅବା ସତ-ମିଛର କାହାଣୀ ସଂପୂର୍ଣ୍ଣ ସତ ବୋଲି ମନେହେବ । ଖାଲି ପଢୁଥିବା ଯାଏଁ, ପରଦା ପଡ଼ିବା ଯାଏଁ ସତ ବୋଲି ମନେ ହେଉଥିବ, ତା' ନୁହେଁ । ତା'ପରେ ମଧ୍ୟ ହୁଏତ "ଆଜି ହୁଏତ ଶତ ବର୍ଷ ପରେ ।" ଏଇ ହେଉଛି ପଳାୟନବାଦୀ ଗପ ଏବଂ ସାହିତ୍ୟ ମଧ୍ୟରେ ଅନ୍ୟତମ ପ୍ରଭେଦ ।

ଗ) ଆନର ଚେତନାରେ ଭବଭବନାର "ନୂଆ" ଅତିଥିଟିଏ ପହୁଞ୍ଚେଇବାକୁ ହେବ । ଅର୍ଥାତ୍ ତୁମକୁ କିଛି ନୂଆ କଥା କହିବାକୁ ହେବ, ଯାହା ବାସ୍ତବରେ ଯେତେ ପୁରୁଣା ଅବା ଶାଶ୍ୱତ ହେଉ ନା କାହିଁକି ।

ଯଥାକ୍ରମେ ପ୍ରତ୍ୟେକର ଆଲୋଚନା କରିବା ।



( ୫ )

ଗପଟିକୁ ପଢିଲେ ସୁଖ ଲାଗିବ । ସୁଖ ଲାଗିବାର ଲକ୍ଷଣ ହେଲା, ପଢୁ ପଢୁ ପଢି ହୋଇଯିବ । କୌଣସି କାରଣରୁ ଏକାଗ୍ରତା ନ ଆସିଲେ ମଧ୍ୟ ପଢିଯିବାକୁ ଇଚ୍ଛା ହେବ । କାରଣ ଏଇ ଗପ ତୁମର ଭାବ-ଭାବନା ଉପରେ ସ୍ୱାଧିକାର ଜମେଇବାକୁ ଚାହେଁ ନାହିଁ । ସେ କେଉଁ ନିକୃଷ୍ଟ ଧରଣର ପ୍ରେୟସୀ ନୁହେଁ ଯେ ତୁମ ଉପରେ ଲଦି ହୋଇଯିବ, ଯଦ୍ୱାରା ତୁମର ସ୍ୱୟଂଚାଳିତ ସହଜଲଭ୍ୟ ପ୍ରେମର ନିଃଶ୍ୱାସ ରୁଦ୍ଧହୋଇ-ଯାଇପାରେ ଓ ତୁମେ ତା'କୁ ପାଖରୁ ଠେଲି ଦେବା ଅସଂଭବ ନୁହେଁ । ସେ ପାଖକୁ ଆସୁ ନ ଆସୁଣୁ କହିବ ନାହିଁ—ମୋତେ ନିଅ । ଭାବ ମୁଁ କଣ କହିଲି । ବୁଝ ମୁଁ କ'ଣ କହିଲି । ବୁଝୁଛ ନା ନାହିଁ ? ପାଇଲ କି ନାହିଁ ? ହାୟ, ତୁମେ କ'ଣ ଏଡ଼େ ଅଜ୍ଞ, ଏତେ ଅଗୁଆଁର ?... ...ଇତ୍ୟାଦି । ନା, ସେ ଲଦି ହେବ ନାହିଁ । ଯଦିଓ ସେ ଅବଶ୍ୟ ଚାହେଁ ଯେ ତୁମେ ତାକୁ ନେବ । ସଂପୂର୍ଣ୍ଣ ଭାବରେ । କିନ୍ତୁ ସେ ବୁଦ୍ଧିମତୀ । ସେ ବାସ୍ତବରେ ତୁମକୁ ପାଠ ପଢ଼େଇବାକୁ ଚାହେଁ, ଏବଂ ମନେକରେ ଯେ ତୁମେ ଏଭଳି ଚିନ୍ତା ଓ ଅନୁଭବର ପାଠପଢି ନ ଥିବ ଆଜିଯାଏଁ । ହେଲେ ସେ କଦାପି ତୁମକୁ ଭାବିବାକୁ ଦେବ ନାହିଁ ଯେ ସେ ଦାତା ଓ ତୁମେ ଗ୍ରହୀତା । ତା'ର କେବଳ ଏତିକି ଇଚ୍ଛା ଯେ ତୁମେ ପଢିଯିବ (ତା'ପରେ ଦେଖିବା କ'ଣ ହେଉଛି) ପଢୁ ପଢୁ ତୁମର ମନ ଲାଗିଯିବ, ତୁମେ ଅନ୍ୟମନସ୍କତାରୁ ଓହରି ଆସି ତା'ର କାୟାକଳେବରକୁ ଛୁଇଁବ, ଯେଉଠୁଁ ତାକୁ ମୁଠେଇ ଧରିବ (ତା'ପରେ ଗଭୀରକୁ ଯିବ ନାହିଁ କେମିତି, ତା'ର ଚିନ୍ତା-ଅନୁଭବର ଅନ୍ତଃକୁ ଅଣ୍ଡାଳି ନ ହୋଇଯିବ କୁଆଡ଼େ ?), ଶେଷକୁ ତୁମେ ତାକୁ ପାଇବ, ଯେଉଁ ପାଇବାରେ ନ ପାଇଲା ପରି ଲାଗେ, ଆହୁରି ପାଇବାକୁ ମନହୁଏ । ସେଇତ ତା'ର ଉଦ୍ଦେଶ୍ୟ, ତୁମ ଦୁହିଁଙ୍କ ଭଲପାଇବାର ଶେଷକଥା !

ପଢୁ ପଢୁ ପଢି ହୋଇଯିବ, ଏଇ କାରସାଦିର ଖଳନାୟକ କିଏ ? ଭାଷା । ଯେଉଁ ଭାଷା ପ୍ରଥମେ ଫୁସୁଲାଏ, ତା'ପରେ ଯୋଉକଥା ।

ଯେଉଁ ଭାଷା ସଂଗୀତ ଶୁଣାଏ, ସ୍ୱୀକାର କରେ ଯେ ଇତିହାସ ମିଛ ନୁହେଁ, ପ୍ରଥମେ ପଦ୍ୟ, ତା'ପରେ ଯାଇଁ ଗଦ୍ୟ, ପ୍ରଥମେ ସ୍ୱର, ଆନନ୍ଦର ଅବା କ୍ରନ୍ଦନର, ତା'ପରେ ଯାଇଁ କଥାକୁହା ।

ତେଣୁ ଏଭଳି ଭାଷାଦେଇ ଗପଟିଏ ଲେଖ, ଯେଉଁଥିରେ ସଙ୍ଗୀତର ସ୍ୱର ଫୁଟି ଉଠୁଥିବ । ପରଦା ପଛରେ, ପ୍ରଚ୍ଛନ୍ନରେ ।

ତୁମ ଗଦ୍ୟରେ ଥାଉ କିଛିଟା ପଦ୍ୟମୟତା । ଛନ୍ଦ, ସାବଲୀଳତା, ଚିତ୍ରକଳ୍ପ, ଇତ୍ୟାଦି । ଯେମିତିକି ଶୁଣୁ ଶୁଣୁ କେବଳ ଶ୍ରବଣକୁ ନୁହେଁ, ପଂଚେନ୍ଦ୍ରିୟକୁ ସୁଖ ଲଗିବ । ଇନ୍ଦ୍ରିୟଗତ ଚେତନା ପ୍ରଥମେ ଟାଣି ହୋଇ ଆସିବ, ତା'ପରେ ସିନା ମନୋ-ବୁଦ୍ଧିର ଚେତନା ବାଗକୁ ଆସିବ ! କିନ୍ତୁ ଅଧିକ ନୁହେଁ, ଅଳ୍ପବହୁତ । ଯେମିତିକି ଗଳ୍ପର କଥାକୁହା ତତ୍ତ୍ୱ, ତା'ର "ପୁରୁଷପଣିଆ"ରେ ଆଂଚ ଲଗିବ ନାହିଁ । ପାଠକ ଭାବିବ ନାହିଁ ଯେ ଇଏ ମେଣ୍ଢା ଚମପିଂଧା ଗଧିଆ, ଗଳ୍ପ ଛଳରେ କବିତା, ବୋଧହୁଏ ଗଳ୍ପରେ କିଛି କହିବାକୁ ନାହିଁ, ସେଇଲାଗି ଏଇ ଭାଷାର ଚହଟଚମକ । ମୋଟାମୋଟି ମିଠାରେ ପାଟି ବାନ୍ଧି ହୋଇଯିବ ନାହିଁ, ହେଲେ ଏଭଳି ମିଠାଥିବ ଯେ...... ପଢୁ ପଢୁ ପଢି ହୋଇଯିବ ।

ଏହିପ୍ରକାର ପଢ଼ାତୋଳା ସହଜ ହୋଇଯିବ, ଯଦି ତା' ସାଙ୍ଗକୁ ଥିବ (୧) ଉପଯୋଗୀ ଶବ୍ଦ ଯୋଜନା, (୨) ଉପଯୋଗୀ ବାକ୍ୟରଚନା ।

କହିବା ବାହୁଲ୍ୟ ଯେ ବିଭିନ୍ନ ଧରଣର ଗଳ୍ପ ପାଇଁ ବିଭିନ୍ନ ଧରଣର ଶବ୍ଦ ପ୍ରୟୋଗ କରିବା ଉଚିତ୍ । ହାଲୁକା ଗପରେ ତତ୍‌ସମ ଶବ୍ଦର ଗୁରୁଗମ୍ଭୀର ଠାଣି ଚଳିବ ନାହିଁ । ଅବଶ୍ୟ ବେଳେ ବେଳେ କୃତ୍ରିମ ଗୁରୁ ଗମ୍ଭୀରତା ବ୍ୟଂଗୋକ୍ତିର ପୋଷାକ ବୋଲି ଧରାଯାଏ, କିନ୍ତୁ ତା'ର ହିସାବ ଅଲଗା । ସେହିଭଳି ପ୍ରେରଣାମୂଳକ ଗପରେ ହାଟ ବଜାରି ଶବ୍ଦର ଫାଜିଲମି ଚଳିବ ନାହିଁ । ଇତ୍ୟାଦି । ତଥାପି ମୁଁ ନିମ୍ନରେ ଟୀକାଟୀପ୍‌ପଣୀ ସହ ଗୋଟିଏ ସାମାନ୍ୟକଥନ ବାଢ଼ି ଦେଉଛି ତୁମ ଆଗରେ, ଯାହା ସେ ସମସ୍ତ ବିଭିନ୍ନତାର ଊର୍ଦ୍ଧ୍ୱରେ ଏବଂ ଯାହାକୁ ଆଶ୍ରାକଲେ ଉପଯୋଗୀ ଶବ୍ଦ ଖୋଜିବାରେ ଅସୁବିଧା ହେବନାହିଁ ବୋଲି ମୋର ବିଶ୍ୱାସ ।

ଶବ୍ଦ ଗୋଟିଏ ସଙ୍କେତ ମାତ୍ର । ସଙ୍କେତର ଧର୍ମ ନୁହେଁ ଯେ ସେ ସବୁକଥା କହିବ । ତେବେ ସେ ତୁମ ଆଖି ସାମ୍‌ନାରେ ଏକପ୍ରକାର ଚେହେରା ଆଣିଦିଏ, ଏକ-ପ୍ରକାର ଧ୍ୱନି ଶୁଣାଏ, କୌଣସି ନା କୌଣସି ଇନ୍ଦ୍ରିୟକୁ ଆବାହନ କରେ । "ସତ୍ୟ", "ଧର୍ମ", "ସୌନ୍ଦର୍ଯ୍ୟ" ଆଦି ଗୁଣାତ୍ମକ ତଥ୍ୟମୂଳକ ଶବ୍ଦରେ ମଧ୍ୟ ଜଣାଶୁଣା ମଣିଷ, ମଣିଷଙ୍କ କାରବାର ଏବଂ ସେଥିରେ ଜଡ଼ିତ ପରିବେଶର ଚେହେରା ଦିଶିଯାଏ, ଧ୍ୱନି ଶୁଣାଯାଏ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଚେହେରାରେ ଏକାଧିକ ରୂପ-

ରଙ୍ଗର ଚମକ, ଧ୍ୱନିରେ ଏକାଧିକ ସ୍ୱରର ସମାବେଶ, ସେଇଠୁଁ ଅନେକ ପ୍ରତିଛବି ଅନେକ ପ୍ରତିଧ୍ୱନିର ଠେଲାପେଲା...... ଶବ୍ଦ ବିଶେଷ ତୁମର ଚେତନାକୁ କେତେ ଦୂରକୁ ଟାଣି ନେଇଯିବ, ତା'ର ସୀମା ନାହିଁ । ସାଧାରଣତଃ ଏହିପ୍ରକାର ଦେଖିବା ଶୁଣିବାର ମାଧ୍ୟମରେ ହିଁ ପାଠକ ତା'ର ପ୍ରତିକ୍ରିୟାକୁ ଡିଆରି କରେ, ସଜାଏ, ଏପରିକି"ସତ୍ୟ" ଅବା "ଧର୍ମ"ର ମହିମାକୁ ଅନୁଭବ କରେ । କିନ୍ତୁ ପ୍ରଭେଦ ହେଉଛି ଏତିକି ଯେ କେତୋଟି ଶବ୍ଦରେ ଏଇ ଅନୁଭବର ବାଟ ସହଜେ ଫିଟିଯାଏ ଏବଂ କେତୋଟିରେ ତାଲା ପଡ଼ିଥାଏ, ତାକୁ କଷ୍ଟକରି, ହୁଏତ ଝାଳନାଳ ହୋଇ, ନ ଖୋଲିବା ଯାଏଁ । ପ୍ରବନ୍ଧ ଗଦ୍ୟରେ ଦ୍ୱିତୀୟ ପ୍ରକାର ଶବ୍ଦର ପ୍ରାଦୁର୍ଭାବ ରହିଲେ କ୍ଷତି ନାହିଁ, କାରଣ ପାଣ୍ଡିତ୍ୟରେ ସୁଖପାଠ ଅନିବାର୍ଯ୍ୟ ନୁହେଁ । ଅନୁଭବ ନ ଥିଲେ ନାହିଁ,ପଣ୍ଡିତ ଶୃଙ୍ଖଳାରେ ଯୁକ୍ତିର ମିଶାଣ ଫେଡ଼ାଣରେ ମାତିବାକୁ ପଛେଇବ ନାହିଁ । ଯେହେତୁ ମୂଳକୁ ଚିନ୍ତାକୁ ଆବୁରି ବସିବା ତା'ର ଅଭ୍ୟାସ । କିନ୍ତୁ ସାହିତ୍ୟ-ପାଠକ ପଣ୍ଡିତ ନୁହେଁ, ସେ ଦରଦୀ, ବିଦଗ୍ଧ, ଅନୁଭବର ଟୋପାଏ ଅମୃତକୁ ଅଣ୍ଟ ମେଲେଇ ରହିବା ତା'ର ବଦ୍‌ଗୁଣ । ନ ହେଲେ କି ସେ ମିଛୁଟାରେ ସଂସାରର ଦରକାରୀ କାମଧନ୍ଦା ଛାଡ଼ି କବିତାଟିଏ ଗପ-ଟିଏ ପଢି ବସେ ? ତେଣୁ ତା'ପ୍ରତି ଦୟାକର, ତାକୁ ତାଲାଭଙ୍ଗା ପରିଶ୍ରମ କରିବାକୁ ଦିଅ ନାହିଁ । ସେଥିରେ ସେ ଫିଡ଼ିକିଯିବା ସ୍ୱାଭବିକ ।

ଅତଏବ ଗଳ୍ପର ଶବ୍ଦଗୁଡ଼ିକ ଏମିତି ହୋଇଥାଉ ଯେଉଁଥିରେ ଦେଖିବା-ଶୁଣିବାର ବାଟ ସହଜେ ଫିଟିଯିବ, ବିବିଧ ରୂପରଙ୍ଗ ସମେତ ଚେହେରା ଝଳଝଳ ହୋଇ ଦିଶିଯିବ, ଧ୍ୱନିର ପ୍ରତିଧ୍ୱନି ଲଂବିଯିବ ସ୍ମରଣରୁ ସ୍ମରଣକୁ, ହୁଏତ ଚେତନାରୁ ଅବଚେତନକୁ......ସେଇଠୁଁ ଭବ ଭବନାର ପ୍ରତିକ୍ରିୟା ପାଠକର ଆପଣା ଅନୁଭବରେ ସଜାଡ଼ି ହୋଇଯିବ ।

ଗୋଟିଏ ପଦରେ କହିବାକୁ ଗଲେ ତୁମ ଶବ୍ଦଗୁଡ଼ିକ ଯେତେ ବ୍ୟଂଜନାତ୍ମକ (expressive) ଏବଂ ସ୍ମୃତିଦ୍ୟୋତକ (evocative) ହୋଇପାରେ ସେତେ ଭଲ ।

ବ୍ୟଞ୍ଜନା-ଦ୍ୟୋତନାର ତାଡ଼ନାରେ ପାଠକ ତୁଳେଇ ପାରିବ ନାହିଁ ଏବଂ ତା'ର ଚଳଚଞ୍ଚଳ ପହୁଂଚ ଯେତେ ଦୂରକୁ ଯାଉ ନା କାହିଁକି, ଭରସା ରଖ ଯେ ପାଠକ ତାକୁ ଅବିଳମ୍ବେ କେଉଁ ଏକ ଜଣାଶୁଣା ନିର୍ଦ୍ଦିଷ୍ଟତାରେ ବାନ୍ଧି ପକେଇବ । ଗପର ସପନି ସାଙ୍ଗରେ ଆପଣା ସଂସାରର କେଉଁ ସାବି କି ସୁଲିକୁ ନ ମିଶେଇଲେ ତା' ମନ ଶାନ୍ତ ହେବ ନାହିଁ । ସେଇଠୁଁ ସେ ଆଗେଇଯିବ ବୋଲି ଆଶା କରିବା ଭୁଲ୍ ହେବ କି ?

ଏଥର ଭବ ସ୍ଥଳବିଶେଷରେ କେଉଁ ଶବ୍ଦଟିକୁ ଥାପିବ—ପୃଥୁଳ ନା ମୋଟା, ନା ଗେଧେକା; ନିର୍ଧନ, ନିରିମାଖା,ନା କାଙ୍ଗାଳ;ଜ୍ୟୋତ୍ସ୍ନା-ବିଚ୍ଛୁରିତ ହୋଇଛି ନା ଛିଟିକି ପଡୁଛି । ଇତ୍ୟାଦି । ଏବଂ ବିଗ୍ରରକର ଯେ ଚନ୍ଦାମୁଣ୍ଡିଆ ବସନ୍ତମୁହାଁ ଯଦୁବାବୁ 'ପାତଳ ହସଟିଏ ଘୋଡ଼େଇ ହୋଇ' ବାହାରିଗଲେ ବୋଲି କହିଲେ କ'ଣ ଭୁଲ ହେବ ? ନା' ସେଥିରେ ପାଠକର ଓଠରେ ମଧ୍ୟ ପାତଳ ହସଟିଏ ଦେଖାଦେବ ଓ ଲୋକଟିକୁ ନ ଚିହ୍ନିବା ଯାଏଁ ତା'ର ତର ସହିବ ନାହିଁ ?

ଦ୍ୱିରୁକ୍ତିରେ ବାଧା ନାହିଁ; ଶବ୍ଦ ସଙ୍କେତ ମାତ୍ର । ତେଣୁ ତା'ର ବ୍ୟାକରଣ-ଗତ ସଂସ୍କାରଗତ ପବିତ୍ରତାକୁ ଡର ନାହିଁ । ବୋଧଗମ୍ୟତା ଓ ଶାଳୀନତାର ସୀମା ଭିତରେ ଶବ୍ଦମାନଙ୍କୁ ଅଳ୍ପବହୁତ ମୋଡ଼ିଦେଲେ ଭାଙ୍ଗିଦେଲେ ଓଲଟପାଲଟ କରିଦେଲେ କ୍ଷତି ନାହିଁ, ଯଦି ତଦ୍ୱାରା "ସଂଶୋଧିତ" ଶବ୍ଦ ଅବା ଶବ୍ଦମାଳା ଅଧିକ ଉପଯୋଗୀ ବୋଲି ମନେ ହେଉଛି । ଏଇଠି ଟି. ଏସ. ଇଲିଅଟ୍‌ଙ୍କ ପ୍ରଗଲ୍‌ଭ ଉପଦେଶ ମନେ ପଡୁଛି । କହିଲେ, ଭାଷାକୁ ଅଖାଂଢ଼ କଲେ ଯାଇଁ ଅର୍ଥ ବାହାରିବ (dislocate language into meaning) । ଅବଶ୍ୟ ସେ କବିମାନଙ୍କୁ କହିଥିଲେ ଏ କଥା ଏବଂ କବିତା କ୍ଷେତ୍ରରେ ଏହା ବିଶେଷଭାବରେ ପ୍ରଯୁଜ୍ୟ । କିନ୍ତୁ ଗଳ୍ପରେ ମଧ୍ୟ ଏହି ପ୍ରକାର ନିର୍ଭୀକତାର ଆବଶ୍ୟକତା ରହିଛି । ମନେପକାଅ ଫକୀରମୋହନଙ୍କ ପୂର୍ବରୁ କେଉଁପ୍ରକାର ଶୁଦ୍ଧ ଅଥଚ ନିଦାପିଟା ଗଦ୍ୟ ସାହିତ୍ୟ ଲେଖା ହେଉଥିଲା, ଏବଂ ଫକୀରମୋହନ କେମିତି ସେଇ ଶୁଦ୍ଧତାର ଅବଜ୍ଞା କରି ଓଡ଼ିଆ ସାହିତ୍ୟକୁ ଏକାଧାରରେ ଘନିଷ୍ଠ ଏବଂ ସ୍ୱତନ୍ତ୍ର କରାଇ ପାରିଲେ । ଆମ ବେଳର ଗୋପୀନାଥ ମହାନ୍ତିଙ୍କୁ ଦେଖ । ସେ ମଧ୍ୟ କେମିତି ସଂସ୍କାରବାଦୀଙ୍କ ସମାଲୋଚନାକୁ ଭ୍ରୂକ୍ଷେପ ନ କରି ଅମଡ଼ା ମାଡ଼ିଗଲେ । ଏବଂ ଯେହେତୁ, ମୋ ନିଜ ଭାଷାରେ ('ମଣିହରା' ସଙ୍କଳନର ଉତ୍ସର୍ଗ ପତ୍ର) କାଦୁଅରେ ରଙ୍ଗ ଥିଲା ପରି ଲାଗିଲା, ଘାସରେ ବାସ୍ନା ଥିଲାପରି ମନେହେଲା, ପବନ କ'ଣ କଥା କହୁଛି କି ବୋଲି ଧାରଣା ହେଲା । ଆମେ କ'ଣ ସେମାନଙ୍କୁ ଟପିଯାଇ ତାଙ୍କର ଯୋଗ୍ୟ ଦାୟାଦ ହୋଇ ପାରିବା ନାହିଁ ?

ବାକ୍ୟ ରଚନା ବିଷୟରେ ଅଳ୍ପ କିଛି କହିବାର ଅଛି । ମୋ ମତରେ ପାଠକକୁ ଏକାନହସରେ ଅନେକ ଗୁଡ଼ାଏ କଥା ଆବୁରିବାକୁ ପଡ଼ିଲେ ସେ ଧୈର୍ଯ୍ୟ ହରାଇବା ଅସମ୍ଭବ ନୁହେଁ । ତେଣୁ ପୂର୍ଣ୍ଣଚ୍ଛେଦକୁ ବେଶି ସମୟ ଯାଏଁ ବସେଇ ରଖିବା ଉଚିତ ନୁହେଁ । ପରିଚ୍ଛେଦକୁ ମଧ୍ୟ ବେଶିବାଟ ଚଲେଇବା ଅନୁଚିତ । ପାଠକ ଟିକିଏ ଦମ୍ ମାରୁ, ତାହାହେଲେ ସେ ତୁମର ବକ୍ତବ୍ୟ ଆହୁରି ଭଲ ଭାବରେ ବୁଝି

ପାରିବ । ଅବଶ୍ୟ କେତେକ କ୍ଷେତ୍ରରେ ଲମ୍ବା ଲମ୍ବା ବାକ୍ୟ କିମ୍ବା ଲମ୍ବା ଲମ୍ବା ପରିଚ୍ଛେଦ ଆବଶ୍ୟକ ହୋଇପାରେ । ବେଳେ ବେଳେ ଆବେଗର ଆତିଶଯ୍ୟରେ ଚରିତ୍ରଟି ବିବିଧ ଏବଂ ପରସ୍ପରବିରୋଧୀ ଭାବନା ଭାବିବାକୁ ବସିବ, ଏକାଧିକ ଦୃଶ୍ୟର ଚଳଚିତ୍ର ନ ଦେଖି ରହିପାରିବ ନାହିଁ । ତା'ର ସେହି ପ୍ରକାର ସ୍ୱାଧୀନତାକୁ ଅକ୍ଷୁର୍ଣ୍ଣ ରଖିବା ବାଞ୍ଛନୀୟ । ତା'ଛଡା ସେ ସମସ୍ତ କ୍ଷେତ୍ରରେ ପାଠକ ଟିକିଏ ଅଣନିଶ୍ୱାସୀ ହେଲେ ଭଲ । କାରଣ ତାହାହେଲେ ବୋଧହୁଏ ସେ ସେଇ ଅସାଧାରଣ ଆବେଗର ଯଥାଯଥ ସନ୍ଧାନ ପାଇବ । କିନ୍ତୁ ସେହିପ୍ରକାର ଆବଶ୍ୟକତାକୁ ଆୟତ୍ତରେ ରଖିଥିବ । ବିଶେଷତଃ କ୍ଷୁଦ୍ର ଗଳ୍ପ ପାଇଁ । ଏବଂ ସାଧାରଣତଃ ଗୋଟିଏ ଲମ୍ବା ବାକ୍ୟ ପରେ କେତୋଟି ଛୋଟ ଛୋଟ ବାକ୍ୟ, ତଥା ଲମ୍ବା ପରିଚ୍ଛେଦ ପରେ ସାନ ପରିଚ୍ଛେଦଟିଏ, ହୁଏତ ଚମକପ୍ରଦ ଧାଡ଼ିଏ କଥାର ପରିଚ୍ଛେଦ ଖଞ୍ଜିଦେଲେ ପାଠକକୁ କ୍ଳାନ୍ତ ଲାଗିବ ନାହିଁ ।

ସୁଖପାଠ ପାଇଁ ଉପଯୋଗୀ ଭାଷାବିନ୍ୟାସ ଛଡ଼ା ଆଉ କେତୋଟି କୌଶଳର ଭୂମିକା ରହିଛି । ସେଥିମଧ୍ୟରୁ ଯୋଡ଼ିଏ ପ୍ରଧାନ କୌଶଳ ଉଲ୍ଲେଖଯୋଗ୍ୟ । ଗୋଟିଏ ହେଲା, ଗପଟିକୁ ଖାଲି ଶୁଣେଇଲେ ଯଥେଷ୍ଟ ନୁହେଁ, ପାଠକର କାନରେ କୁହ । ଏକାନ୍ତରେ, ତା'ର ଅନ୍ତରଙ୍ଗ ବନ୍ଧୁ ପରି । କେତେକ କ୍ଷେତ୍ରରେ "ମୁଁ"ର ମୁହଁରେ ଗପ ଶୁଣେଇଲେ ଭଲହେବ ପରା । କିନ୍ତୁ ସେଥିରେ ଗୋଟିଏ ଅସୁବିଧା । "ମୁଁ" ନିଜ ଭାବନା ଛଡ଼ା ଆଉ କାହାରି ଭାବନାରେ ଦଖଲ ଦେଇ ପାରିବ ନାହିଁ । କିନ୍ତୁ ଏଇ ସୀମାବଦ୍ଧତାକୁ ଅସ୍ୱୀକାର କରି ସର୍ବଜ୍ଞ ହିସାବରେ ଗପଟିକୁ ଶୁଣେଇଲେ ମଧ୍ୟ ଅନ୍ତରଙ୍ଗତାର ଭ୍ରମ ଆଣିଦେଇ ହେବ, ଯଦି ପ୍ରତ୍ୟେକ ଚରିତ୍ର ପାଠକ ପାଇଁ "ତୁମର ମୁଁ" ହୋଇ କଥା କହିପାରେ, ଏଭଳି ଗୋପନଗହୀର କଥା ଯେ ସେ ଆଉ କାହାକୁ କହିପାରି ନ ଥିଲା ଆଜିଯାଏଁ । ଏଭଳି ଆବ୍‌ଦାରକୁ କେଉଁ ପାଠକ ଭଲା ଆଡ଼େଇ ଦେଇ ପାରିବ ? ଏଥିରେ ଭାଷାଠାରୁ ବଳି ଭଙ୍ଗୀର ଚତୁରତା ଆବଶ୍ୟକ, କିନ୍ତୁ ଅଭ୍ୟାସ ଦ୍ୱାରା ତାକୁ ତୁଲେଇବାରେ କଷ୍ଟ ହେବ ନାହିଁ ବୋଲି ମୋର ବିଶ୍ୱାସ । ଦ୍ୱିତୀୟରେ ଏମିତି ଭାବରେ ଗପଟି କୁହ ଯେ ପାଠକ ମନରେ ଉଦ୍‌ବିଗ୍ନତା ଦେଖା-ଦେବ । ଆରମ୍ଭର ପ୍ରତିଶ୍ରୁତି ଓ ଶେଷକଥାର ଜାଗ୍ରୁତିକୁ ନେଇ ପ୍ଲଟ୍, ଏକଥା ପୂର୍ବରୁ କହିଛି । କିନ୍ତୁ ପ୍ରତିଶ୍ରୁତି ମିଛ ନୁହେଁ, ପାଠକ ମନରେ ଏଇ ଆଶାଟି ସଜାଗ ହୋଇ ରହି ନ ଥିଲେ ସେ ଶେଷଯାଏଁ ପଢିବାକୁ ମନ କରିବ ନାହିଁ । ତେଣୁ କ୍ରମର କ୍ରମଶୀଳତାକୁ ଜଗିଥାଅ, ଯେମିତିକି ଖଣ୍ଡେଦୂର ନ ଯାଉଣୁ ପାଠକ ଆଶ୍ୱସ୍ତ ହେବ

ଯେ ଗଳ୍ପ ବହଳ ହୋଇ ବସିଯାଇ ନାହିଁ, ଚକାଭଉଁରି ଖେଳୁ ନାହିଁ, ପ୍ରବାହିତ ହେଉଛି । ସେଇଠୁଁ ଯତ୍କିଂଚିତ୍ ଉଦ୍‌ବିଘ୍ନତା ଆସିବ–ଇଏ କୁଆଡ଼େ ଯାଉଛି ? ଏହା ପରେ କଅଣ ହେବ ? ପାଠକର ଉଦ୍‌ବିଘ୍ନତା ହିଁ ଲେଖକର ଉତ୍କଣ୍ଠା–ଯେ ମୋ ଗପ ମୂଳରୁ ଶେଷ ଯାଏଁ ପଠିତ, ଗୃହୀତ ଏବଂ ଉପଲବ୍ଧ ହେବ । ତଥାକଥିତ ଘଟଣା-ବିହୀନ ଭାବନା ପ୍ରଧାନ ଗପରେ ମଧ୍ୟ ଏଇ ପ୍ରବହମାନତା, ଅର୍ଥାତ୍ ସ୍ରୋତମୁଖୀ ଉଦ୍‌ବିଘ୍ନତା ଆଣି ନ ଦେଲେ ଗପଟି ଆପଣାଗୁଣରେ ଆଦୃତ ହେବ ବୋଲି ଧରିନେବା ଅନୁଚିତ୍ । ଏହି ପରିପ୍ରେକ୍ଷୀରେ ମୁଁ ତୁମକୁ ତିନୋଟି "ସ୍ଥାଣୁ" ଗପ ପଢ଼ିବା ପାଇଁ ଆମନ୍ତ୍ରଣ ଜଣାଉଛି । ଗୋଟିଏ ହେଲା ମୋ ନିଜର "ଲକ୍ଷ ବିହଙ୍ଗ" ଯେଉଁଠି ନାୟିକା କେବଳ ଶୋଇ ରହିଛି ତା' ଦିନବେଳିଆ ବିଛଣାରେ ଓ ଭାବି ଚାଲିଛି । ଦ୍ୱିତୀୟଟି ଗୋରୀବାବୁଙ୍କ "ମୁଣ୍ଡିଆ" (ସୁଚରିତା ଲେଖକ ବିଶେଷାଙ୍କ ୧୯୮୪) ବୁଢ଼ାଟିଏ କେବଳ ବସି ରହିଛି ଓ ତା' ମୁହଁ ଦେଖାଯାଉଛି ଟାଙ୍ଗର ପର୍ବତର ମୁଣ୍ଡିଆ ପରି । ତୃତୀୟଟି Arthur Koestlerଙ୍କ ସୁପ୍ରସିଦ୍ଧ ଗଳ୍ପ Darkness at Noon ଯେଉଁଠି ମୃତ୍ୟୁଦଣ୍ଡରେ ଦଣ୍ଡିତ ଅପରାଧୀ ଅଧରାତିକୁ ଅପେକ୍ଷା କରି ରହିଛି, ଯେତେବେଳେ ସେ ମରିବ ଏବଂ ତା'ର ଅତୀତକୁ ପଚାରୁଛି ଯେ କାହିଁକି ଏମିତି ହେଲା । ତୁମେ ନିଜେ ଭାବିଚିନ୍ତି ଦେଖ, ଏଇ ତିନୋଟିରେ ଉକ୍ତ ପ୍ରବହମାନତା ଅଛି କି ନାହିଁ ଓ ଥିଲେ କେତେଦୂର ଅଛି । ଏବଂ ଲେଖକକୁ ତୁମେ ଆଉ କିପରି ଭାବରେ ସାହାଯ୍ୟ କରି ପାରି ଥା'ନ୍ତ ।

ଶେଷରେ ଗୋଟିଏ କଥା କହିରଖେ । ମୋ ମତରେ ସରଳ ଭାଷା ଓ ଭଙ୍ଗୀ ସୂକ୍ଷ୍ମ ଅବା ଜଟିଳ ଭାବର ଅନ୍ତରାୟ ନୁହେଁ, ଅଧିକନ୍ତୁ ତା'ର ପରିପୋଷକ । ସମର୍-ସେଟ ମମ୍ ମୂଳରୁ ଏଇ ସିଦ୍ଧାନ୍ତରେ ପହୁଞ୍ଚିଲେ, ଯେତେବେଳେ ସେ ଡାକ୍ତରୀ ବିଦ୍ୟା ଛାଡ଼ି ଗପ ଲେଖାରେ ମନ ଦେଲେ ଓ ସାହିତ୍ୟର ଭାଷା ଶିଖିବା ପାଇଁ ଲାଇବ୍ରେରୀରେ ଘଣ୍ଟା ଘଣ୍ଟା ଧରି ନାନାଦି ବହି ପଢ଼ିଲେ, ଡିକ୍‌ସନାରୀ ଖେଳେଇଲେ... ଏବଂ ହାର୍ ମାନି କହିଲେ ମୋ ସମୟଗୁଡ଼ା ନଷ୍ଟ ହୋଇଗଲା । ଯେହେତୁ ମୁଁ ପଣ୍ଡିତ ହେବାକୁ ଯାଉ ନାହିଁ, ମାତ୍ର ଲେଖକ ।

"ମାତ୍ର ଲେଖକ" ହେବାର ସ୍ୱାଧୀନତାରେ ବାନ୍ଧିଥାଅ ପାଠକର ମନକୁ, ନିଜକୁ ଭଲଲାଗିଲା ପରି ସହଜ ସ୍ୱଚ୍ଛନ୍ଦ ଭାଷାରେ ଓ ଭଙ୍ଗୀରେ । ସୁଖପାଠ ପର୍ଯ୍ୟାୟରେ ଏଇ ହେଉଛି ମୋ ସୁପାରିଶର ସାରକଥା ।

( ୭ )

ପଢିବାକୁ ସୁଖ ଲାଗୁଛି ସିନା–କିନ୍ତୁ କ'ଣ ଅଛି ଏଥିରେ ? ପାଠକର ମନରେ ଏଇ ପ୍ରଶ୍ନ ଉଠିଲା ବେଳକୁ ସାଙ୍ଗେ ସାଙ୍ଗେ ତା'ର ଉତ୍ତର ମିଳିଯିବା ଉଚିତ–ହଁ, ସତକଥା ପରି ଲାଗୁଛି ତ ! ପାଠକ ପାଇଁ ସତର ଅର୍ଥ ବାସ୍ତବ । ବାସ୍ତବର ଅର୍ଥ ପାଠକର ସଂସାରରେ(ଅନ୍ତତଃ ପାଠକ ଗ୍ରହଣ କରିନେଇ ପାରିଲା ପରି ସଂସାରରେ)ସମ୍ଭବିତ ଘଟଣା-ଚରିତ୍ରର କଥା । ତେଣୁ ସଫଳ ଗଳ୍ପର ସୃଷ୍ଟି ପାଇଁ ଏଇ ଦ୍ୱିତୀୟ ଅପରିହାର୍ଯ୍ୟ ଆବଶ୍ୟକତା :

ମିଛ ଅବା ସତ-ମିଛର କାହାଣୀ ସମ୍ପୂର୍ଣ୍ଣ ସତ ବୋଲି ମନେହେବ । କେବଳ ସତ ନୁହେଁ, "ସମ୍ପୂର୍ଣ୍ଣ " ସତ । ମନେହୋଇପାରେ ଯେ ମୁଁ ଏଇ ବିଶେଷଣଟିକୁ ଅଯଥାରେ ଯୋଡ଼ି ଦେଉଛି । କେହି କେହି ଧର୍ମାତ୍ମା କହି ପାରନ୍ତି ଯେ ଇଏ କେବଳ ଲେଖକର ବଡ଼େଇ ନୁହେଁ, ତହୁଁ ବଳି ଅଶୋଭନୀୟ ଦୁରାଗ୍ରହ । ଏକମାତ୍ର ସମ୍ପୂର୍ଣ୍ଣ ଭଗବାନଙ୍କଠାରେ ଦ୍ରୋହ । ତଥାପି ମୁଁ ଏଇ ଶବ୍ଦଟିକୁ କାଟିଦେଇ ପାରୁନାହିଁ, ତା'ର କାରଣ ମୋର ଦୃଢ଼ ଧାରଣା ଯେ ଆମେ–ମୁଁ ଯାହା ମୋ ପାଠକ ସେଇଆ–ନିଜ ନିଜର ସାଧାରଣ, ସ୍ଥୂଳ, ଏବଂ ପ୍ରତ୍ୟକ୍ଷ ସତରେ ବନ୍ଦୀହୋଇ ରହିବାକୁ ଗ୍ରହୁଁ ନାହିଁ । ଇଏ ଆମ ବାସ୍ତବ ନୁହେଁ । ଆମ ବାସ୍ତବ ହେଉଛି ଆମେ ଯାହା ଭାବିପାରି ଥାଆନ୍ତୁ, କରି ପାରି ଥାଆନ୍ତୁ ଅନୁଭବ କରି ପାରି ଥାଆନ୍ତୁ...ଜଳ ଜଳ ହୋଇ ଦିଶି ଯାଉଥିବା, ହେଲେ ଘୁଞ୍ଚି ଯାଉଥିବା ପଦ୍ମ । ପ୍ରକୃତରେ ଆମ ପହଂଚ କେତେ ଦୂରକୁ ଯାଇ ପାରିଥାଆନ୍ତା ସେକଥା ଭିନ୍ନ, କିନ୍ତୁ ଆମର ଏଇ ଅଭିଳଷିତ ଆତ୍ମାଭିମାନ ହିଁ ଆମର ସ୍ୱରୂପ, ସେଇ ଆମର ସମ୍ପୂର୍ଣ୍ଣତା । କେବଳ ଊର୍ଦ୍ଧ୍ୱକୁ ନୁହେଁ, ନିମ୍ନକୁ ମଧ୍ୟ । ମୋଟକଥା ଏଇ ଯେ ଆମେ ବନ୍ଦୀ ନୋହୁଁ, ଆମେ ଅର୍ଦ୍ଧ-ଅନୁଭବର ଶାସ୍ତି ପାଇନାହୁଁ ସବୁଦିନ ପାଇଁ । ଆମେ ଆହୁରି ଦୂରକୁ ଯାଇ ପାରିବୁ, ଯାଇ ପାରି ଥାଆନ୍ତୁ । କେଉଁ ଯାଏଁ ବୋଲି ପଗ୍ଗର ନାହିଁ । ଲେଖକ ହୋଇଛ ପରା, ଏତିକି ଜଣା ନାହିଁ ତୁମକୁ ?

ମନନଶୀଳ ପାଠକର ଏଇ ବ୍ୟାକୁଳତାଟିକୁ ସ୍ୱୀକାର କରିବା, ତା'ର ସମ୍ମାନ ଦେବା କ'ଣ ଠାକୁରଙ୍କ ଠାରେ ଦ୍ରୋହ ? ନା ମୁମୁକ୍ଷାର ଅନ୍ୟତମ ରୂପ, ତେଣୁ ଠାକୁରପଣିଆ ?

କିନ୍ତୁ ଏଇଠି ମଧ୍ୟ ବିପଦ । ତୁମ-ଆମ ସଂପୂର୍ଣ୍ଣତାକୁ ସହଜେ କଳି ହୁଏ ନାହିଁ, ତେଣୁ ଲେଖକ ସୀମା ଟପି ଯାଏ । କ୍ଷୀର ଯତ୍ ସାମାନ୍ୟ ଉତୁରି ପଡୁ କ୍ଷତି ନାହିଁ । କିନ୍ତୁ ମୋର ଦୁଃଖ ଯେତେବେଳେ ସେ ଆପଣା ସଂପୂର୍ଣ୍ଣତାକୁ କଳିବା ପାଇଁ ଚେଷ୍ଟା କରେ ନାହିଁ, ଖାଲି ଚମକ ସୃଷ୍ଟି କରିବା ପାଇଁ ଅଥବା ତଥାକଥିତ କାବ୍ୟିକ ସଂସ୍କାରର ବଶବର୍ତ୍ତୀ ହୋଇ ଅମଡ଼ା ମାଡ଼ିଯାଏ, ଯାହା ଫଳରେ ଆଧୁନିକ ବୁଦ୍ଧିବାଦୀ ପାଠକ ତା'ର ଲେଖାକୁ ଯେତେ "ଭଲ" ବା "ସୁନ୍ଦର" ବୋଲି କହୁନା କାହିଁକି ସତ ବୋଲି ମଣି ପାରେ ନାହିଁ । କୁହେ ଇଏ ମାତ୍ର କାହାଣୀ, ତୁଚ୍ଛା ଗପ, ଅବାସ୍ତବ !

ମନଭୁଲାଣିଆ ତୁଚ୍ଛା ଗପ ଲେଖିବାର ଯୁଗ ଚାଲିଗଲାଣି, ହେଲେ ଆଧୁନିକ ମଣିଷ ତଥାପି କେଉଁ ଏକ ସଂପୂର୍ଣ୍ଣତାର ମୋହକୁ ଛାଡ଼ିବା ପାଇଁ ନାରାଜ । ସାହିତ୍ୟ କେବଳ ପ୍ରତିଛବି, ଫଟୋଗ୍ରାଫି ହୋଇ ରହିଲେ ପେଟ ପୂରିବ ନାହିଁ, ସେଥିରେ କଳ୍ପିତ ସଂପୂର୍ଣ୍ଣତା ଆଣି ଦେବାକୁ ପଡ଼ିବ, ଯାହା ହୋଇଥିବ ବାସ୍ତବ । ଗାଈ କାଳୀ ହୋଇଥିବ, ତଥା କାମଧେନୁ ।

ଉପାୟ ନାହିଁ । ଅସଂଭବ ବୋଲି ମନେ ହେଉଥିବା ଏଇ ଚାହିଦାକୁ ସଂଭବ କରାଇବାକୁ ପଡ଼ିବ । ସଂପୂର୍ଣ୍ଣ ମିଛ ଅବା ସତ-ମିଛର କାହାଣୀକୁ, ତା'ର ପ୍ରତ୍ୟେକ ଉପାଦାନ, ଯଥା ଚରିତ୍ର, ଘଟଣା, ପରିବେଶ ଏବଂ ପାରସ୍ପରିକ କଥାଭାଷା କ୍ରିୟା-ପ୍ରତିକ୍ରିୟାକୁ "ସଂପୂର୍ଣ୍ଣ" ସତବୋଲି ଦେଖେଇବାକୁ ପଡ଼ିବ । ସଫଳତା ତୁମ ହାତରେ ନାହିଁ, ଆଜିର ପାଠକ ମଧ୍ୟ ତୁମର ଶେଷ ବିଚାରକ ନୁହେଁ (ମୁଁ ନିଜେ କେତେଦୂର ସଫଳ ହୋଇଛି ଜାଣେ ନାହିଁ) ତଥାପି କେତୋଟି ବାଗ ଶିଖେଇବାକୁ ମନା ନାହିଁ । ଶୁଣିବା ହେଉ–

(୧) ଚରିତ୍ର : ଚରିତ୍ର ଗଳ୍ପର ସର୍ବପ୍ରଧାନ ଅଙ୍ଗବୋଲି ମୁଁ ମନେକରେ, କାରଣ ମଣିଷକୁ ଛାଡ଼ିଦେଲେ କଥାକୁହା ଅବାନ୍ତର । ଚରିତ୍ର ମଣିଷ ନ ହୋଇ ପଶୁ ହୋଇ ପାରେ, ପକ୍ଷୀ ହୋଇ ପାରେ, ଅବା ପାହାଡ଼ ପର୍ବତ । ତେବେ ସେ ଯେଉଁ-ବାଟେ ହେଲେ ତୁମ ଆମର ଜୀବଦଶାକୁ ଚିହ୍ନେଇଲେ ହେଲା । ମଣିଷଠାରୁ ପୂରାପୂରି ବିଚ୍ଛିନ୍ନ ହୋଇ, କହିବାକୁ ଗଲେ ତାକୁ ହେୟଜ୍ଞାନ କରି, ଅନେକ ଘଟଣା ଘଟୁଛି ଓ ଘଟୁଥିବ ଆମ ଆକାଶରେ, ପାତାଳରେ, ପୃଥିବୀରେ । ସେ ସବୁକୁ ଜାଣିଲେ ଭଲ, ଜ୍ଞାନ ବଢ଼ିବ, କିନ୍ତୁ ସେଥିରୁ କିଛିଟା ଆମକୁ-ତମକୁ ଘଟିଲେ ବା ଘଟିଲା ପରି ମନେ ହେଲେ ଯାଇଁ ତାକୁ ନେଇ ଗପ ଲେଖି ହେବ । ଅନ୍ୟଥା ନୁହେଁ । ଗୋପୀନାଥ ମହାନ୍ତିଙ୍କ "ମୁଣ୍ଡିଆ" ବିଷୟରେ କହିଛି ପୂର୍ବରୁ । ଏଠି ମୁଣ୍ଡିଆ ଗୋଟିଏ ନିର୍ଦ୍ଦିଷ୍ଟ

ଚରିତ୍ରକୁ ଚିହ୍ନାଉଛି, ଏବଂ ଏଭଳି ଚରିତ୍ର ପୃଥିବୀର ଗୋଟିଏ ଘଟଣା କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ଅମୁକ ଘଟଣାର ମଣିଷ ସାଙ୍ଗରେ ସଂପର୍କ ନାହିଁ, ହେଲେ ଏଇ ଘଟଣା ହିଁ ଚରିତ୍ର ... କଅଣ ତା'ର ଅର୍ଥ ? ତା'କୁ କେଉଁ ଆଡ଼ର ସାହିତ୍ୟ ବୋଲି କହିବା ?

ତେଣୁ ମୋ ମତରେ ସର୍ବଥା ଚରିତ୍ରର ଅଗ୍ରାଧିକାର ପ୍ରତି ସଚେତନ ରହିବା ଉଚିତ । ତାହାହେଲେ ଗାର୍ଣ୍ଣିକର ଗଳ୍ପ କଦାପି ନୁଖୁର ମନେହେବ ନାହିଁ, କାହିଁକିନା ସେଥିରେ ଥିବ ମାନୁଷୀ ଅନ୍ତରଙ୍ଗତାର ବାସ୍ନା । ଘଟଣା ପ୍ରଧାନ ଗଳ୍ପର "ଚରିତ୍ରହୀନ" ଲୋକମାନେ ମଧ୍ୟ ପର ହୋଇଯିବେ ନାହିଁ, ଜୀଅନ୍ତା ଏବଂ ଦରକାରୀ ମଣିଷ ପରି ଦିଶିବେ ।

ଚରିତ୍ର ସର୍ଜନାରେ ତିନୋଟି ଦିଗ ରହିଛି : (କ) ନିରୂପଣ; (ଖ) ନିର୍ମାଣ; (ଗ) ଉଦ୍‌ଯାପନ ।

ନିରୂପଣ ବିଷୟରେ କିଂଚିତ୍ କହିବାକୁ ପଡ଼ିଛି ପୂର୍ବରୁ । କାରଣ ଗପ ଲେଖା ଆରମ୍ଭ କରିବା ପୂର୍ବରୁ ହିଁ ତା'କୁ ନେଇ ଅଳ୍ପ ବହୁତ ଭବିବାକୁ ପଡ଼ିବ । ବର୍ତ୍ତମାନ ତା'ର ବିଶଦ ବ୍ୟାଖ୍ୟା କରିବାକୁ ଯାଇ କେବଳ ତିନୋଟି ପ୍ରଶ୍ନର ଅବତାରଣା କରିବାକୁ ଚାହେଁ–

ଏକ–ଚରିତ୍ରଟିକୁ ଚିହ୍ନିଛ ତ ?

ଦୁଇ–ତୁମ ପାଠକ ତା'କୁ ଚିହ୍ନିଛି ତ ?

ତିନି–ତା'କୁ ଚିହ୍ନେଇବାରେ ଭଲ ଲାଗୁଛି ତ ତୁମକୁ ?

ଚିହ୍ନିବାର ଅର୍ଥ ନୁହେଁ ଯେ ତୁମେ ଏହି ଚରିତ୍ରଟିକୁ ସଶରୀରେ ଦେଖିଛ, ଏବଂ ତା'ର ଯାବତୀୟ ଆଗ୍ଭର ବ୍ୟବହାର ତଥା ମନର କାରବାର ତୁମର ଅଜଣା ନୁହେଁ । ଚିହ୍ନିବାର ଅର୍ଥ ତୁମେ ତା'ର ବିବିଧ ବିଭିନ୍ନ ଭଗ୍ନାଂଶକୁ ଚିହ୍ନିଛ–ତା'ର ହସଟି କେମିତି ପ୍ରଥମେ ଆଖି କୋଣରେ ଉତୁରି ଆସେ, ମିଂଜି ମିଂଜି ଆଖି ତାକୁ ସମ୍ଭାଳି ପାରେ ନାହିଁ, ଅସ୍ତବ୍ୟସ୍ତ ହୋଇ ଉଠେ......(ସୀତା); କଥା କହିଲା ବେଳେ ସେ କେମିତି ଧଇଁସଇଁ ହୁଏ, ଦମ୍ ନେଲା ବେଳକୁ ତୁମ ଆଡ଼କୁ ଚାହେଁ ଚଗିଲା ପରି, କାଳେ ତୁମେ ତା'ର ବକ୍ତବ୍ୟ ପ୍ରତି ଧ୍ୟାନ ଦେଇ ପାରି ନ ଥିବ......(ଗୀତା); ସେ କେମିତି ଅଭଦ୍ର କଥା ଶୁଣିବାକୁ ଭଲ ପାଏ, ଅଥଚ ଶୁଣିଲା କ୍ଷଣି ଲାଜେଇଯାଏ, ଧ୍ୟାତ୍ ବୋଲି କୁହେ (ସସ୍ମିତା); ତା' ମାଆ ସାଙ୍ଗରେ କେମିତି ତା'ର ଗୋଳମାଳିଆ ପ୍ରେମ-ଘୃଣାର ସଂପର୍କ (ଆପଣା ପରିବାରର ଅତି-ପରିଚିତା ଜଣେ); ତା'ର କାମୁକତା ଯାହା

କେବଳ ରତିରେ ପର୍ଯ୍ୟବସିତ ହୋଇ ପାରେ ନାହିଁ (ଜନୈକା ଶଯ୍ୟାସାଥୀ), ତା'ର ଧାର୍ମିକତା, କାହିଁକି ସେ ଶିବଙ୍କୁ ସବୁଠୁଁ ବେଶି ଭଲ ପାଏ (ମିସେସ୍ ମହାନ୍ତି); ନିଜ ଲୋକର ମୃତ୍ୟୁରେ ତା'ମନରେ ଓଲଟପାଲଟ ହେଉଥିବା ଭାବନା (ଆପଣା ଅନୁଭୂତିର ଭାବନା, ତୁମେ ପୁରୁଷ ଏବଂ ଚରିତ୍ର ନାରୀ ହୋଇଥିଲେ ମଧ୍ୟ ଯାଏ ଆସେ ନାହିଁ କାରଣ ମଣିଷର ଭିତିରି ଭାବନାଗୁଡ଼ିକ ଲିଙ୍ଗ ଅନୁଯାୟୀ ଭିନ୍ନ ବୋଲି ମୁଁ ବିଶ୍ୱାସ କରେ ନାହିଁ); ତା'ର ଘରଦୁଆର (ଯେକୌଣସି ଘରଦୁଆର, ଯେଉଁଥିରେ ଥିବା ଗାଧୁଆକୁଣ୍ଡ ଅବା ଫୁଲକୁଣ୍ଡମାନଙ୍କୁ ଦେଖିଛ ଏବଂ ସ୍ମରଣକୁ ଆଣି ପାରିବ)... ଇତ୍ୟାଦି ଇତ୍ୟାଦି ।

ଏଇ କାରସାଦିର ସାରକଥା ହେଉଛି ଯେ ଯେଉଁ ଚରିତ୍ରଟିକୁ ତୁମେ ଗଢିବାକୁ ଯାଉଛ, ସେ ଅଦ୍ୱିତୀୟ । ସେ ଅବିକଳ ଆଉ କାହା ପରି ହେଲେ ତା'ର ନିଜତ୍ୱ ରହିବ ନାହିଁ । ଅନ୍ୟ ଅର୍ଥରେ ତା'ର "ଚରିତ୍ରଗଣ" ଊଣା ହୋଇଯିବ । ତେଣୁ ସହଜ ପନ୍ଥା ଅବଲମ୍ବନ କରି କେଉଁ ଗୋଟିଏ ଚିହ୍ନା ଲୋକର ସମସ୍ତକୁ ତା'ର ଦେହମନରେ ଥାପି ଦିଅ ନାହିଁ । କଷ୍ଟ କର । ବିବିଧ ବିଭିନ୍ନ ଦେହର ମନର ଚିହ୍ନା ଭଗ୍ନାଂଶକୁ ଏକାଠି କରି ଗୋଟିଏ ବିଚିତ୍ରକୁ ଜୀବନ ଦିଅ, ଯାହାକୁ ଚିହ୍ନି ହେବ । ଅଥଚ ଯେ ତୁମ ଗପର ଗୋପନ ଗଭୀର ରସାତ୍ମକ ତଥା ତାତ୍ତ୍ୱିକ ଉଦ୍ଦେଶ୍ୟ ପୂରଣ କରିପାରିବ ।

ପ୍ରତ୍ୟେକ କ୍ଷେତ୍ରରେ ଏଇ ଯୋଡ଼ା ଯୋଡ଼ିର କାରିଗରି, ଯାହାକୁ ଇଂରାଜୀରେ Collage ବୋଲି କୁହନ୍ତି, ଆବଶ୍ୟକ ବୋଲି ମୁଁ ଦାବି କରିପାରିବି ନାହିଁ । ଜଣେ ଅଧେ ଏଭଳି ଅସାଧାରଣ ଲୋକଙ୍କୁ ହୁଏତ ତୁମେ ଜାଣିଛ, ଯାହାଙ୍କୁ ଗୋଟିପଣେ ତୁମ ଗପର ନାୟକ/ନାୟିକା ଆସନରେ ବସାଇ ହେବ । କିମ୍ବା ତୁମର କଳ୍ପନା ଶକ୍ତି ହୁଏତ ଏପରି ଅସାଧାରଣ, ସ୍ମରଣର କ୍ଷରଣ ଏପରି ସ୍ୱତଃସ୍ଫୂର୍ତ୍ତ ଏବଂ ଅବିରତ ଯେ ଛାଏଁ ଛାଏଁ ଚରିତ୍ରଟିଏ ଗଢି ହୋଇଯିବ । ସେଥିରୁ କେତେଟା ଚିହ୍ନା କେତେଟା ଅଚିହ୍ନା କିଏ ପଗ୍ୱରୁଛି ? କିନ୍ତୁ ସାଧାରଣ କ୍ଷେତ୍ରରେ ଉପରୋକ୍ତ କାରିଗରି ସବୁଠାରୁ ଭଲ କାମ ଦିଏ ବୋଲି ମୁଁ ନିଜ ଅଭିଜ୍ଞତାରୁ କହୁଛି ।

ଏହା ପଛରେ ଅବଶ୍ୟ ବିନୀତ ଲେଖକର ଦାମ୍ଭିକତା ରହିଛି, ଯାହାକୁ ମୁଁ ଅସ୍ୱୀକାର କରିପାରିବି ନାହିଁ । ଚରିତ୍ରରୁ ବଳି ନିଆରା ଏବଂ ଅଦ୍ୱିତୀୟ ହେଉଛି ଲେଖକର ବକ୍ତବ୍ୟ (ତା'ର ବିସ୍ତୃତ ଆଲୋଚନା ପରେ କରାଯିବ) । ସେ ନିଜେ ସାମାନ୍ୟ ସାଧାରଣ ହୋଇପାରେ, କିନ୍ତୁ ସେ ଏଇ ଦମ୍ଭ ନେଇ ବଂଚିଛି ଯେ ତା'ର ଚିନ୍ତା ଦର୍ଶନ, ତା'ର ବକ୍ତବ୍ୟରେ କିଛି ନୂଆ କଥା ଅଛି ଯାହା ଆଗରୁ କେହି କହି

ନ ଥିଲେ । ତେଣୁ ଚଳନ୍ତି ଦୁନିଆରେ ସହଜେ କଣ ତାକୁ ରେଡ଼ି-ମେଡ୍ ଲୋକଟିଏ ମିଳିଯିବ, ଯେ ସେଇ ଅଦ୍ୱିତୀୟ ପୋଷାକର ଅଧିକାରୀ ହୋଇପାରିବ ? ଅତଏବ, ବର୍ଣ୍ଣାଡ୍ ଶ' କହିଲା ପରି, ବିଧାତାକୁ ଉପଯୁକ୍ତ ମୁଣ୍ଡଟିଏ ଗଢିବାକୁ ହେବ, ବୌଦ୍ଧିକ ଟୋପିକୁ ଖାପ୍ ଖାଇଲା ପରି । ବିଧାତାମନ୍ୟ ଲେଖକ କ'ଣ ଏହିପ୍ରକାର ଚ୍ୟାଲେଂଜରୁ ଛୁଟି ନେଇ ପାରିବ ?

ତୁମ ପାଠକ ତାକୁ ଚିହ୍ନିଛି ତ ? — ଏଇ ପ୍ରଶ୍ନର ଅବକାଶ ନାହିଁ, ଯଦି ତୁମେ ଏମିତି ଗୋଟିଏ ଗପ ଲେଖିବାକୁ ବସିଛ, ଯେଉଁଠି ଚରିତ୍ର ବିଶେଷ ସମାଜ-ସଂସାର ବହିର୍ଭୂତ ହୋଇ ନିରେଳା ମାନବୀୟ ଭବ-ଭବନାର ଖେଳ ଦେଖାଇବାକୁ ଗ୍ରହେଁ, ଯାହା ସବୁ ଯୁଗରେ ସବୁ ଦେଶରେ ସମାନ । ଯାହା ମୁଖ୍ୟତଃ ପ୍ରବୃତ୍ତିର ଅଧୀନ । ଯଥା ନିଜକୁ ବଞ୍ଚେଇବାର ପ୍ରବୃତ୍ତି । ମାଆର ଆପଣା ପିଲାକୁ 'ରାକ୍ଷସ' ମୁହଁରୁ ରକ୍ଷା କରିବାର ପ୍ରବୃତ୍ତି । ସେଠି ସୀତା-ଯାହା ସୁଜାନ୍ ସେଇଆ । କିନ୍ତୁ ଯେଉଁଠି ସମାଜ-ସଂସାରର ଭୂମିକା ରହିଛି, ସେଠି ତୁମ ଶ୍ରେଣୀ ସଂସାରରୁ ଅନେକ ଦୂରରେ ଥିବା ଲୋକ-ମାନଙ୍କ ବିଷୟରେ ବିଚିତ୍ର ବାର୍ତ୍ତା ଶୁଣାଇବାର ଲୋଭକୁ ଆୟତ୍ତରେ ରଖିଥିବ । କାରଣ ତୁମେ ସେମାନଙ୍କୁ ଚିହ୍ନିଲେ ଯଥେଷ୍ଟ ନୁହେଁ, ତୁମ ପାଠକ ଗୋଷ୍ଠୀ ତାକୁ ଚିହ୍ନାଇବା ଆବଶ୍ୟକ । ଯଥା ଆଫ୍ରିକାର ବାଣ୍ଟୁ ସମାଜ, ଯେଉଁଠି ବାହା ନ ହୋଇ ପିଲା ଜନ୍ମ କଲେ ଆଦୌ ଆପତ୍ତି ନାହିଁ, କିନ୍ତୁ ବାହାହେଲା ପରେ ଲୁଚେଇ କରି ଆଉ କାହା ସାଙ୍ଗରେ ଆଖି ମିଳେଇବା ମହାପାପ, ସେଠି ସୁଜାନ୍‌ର ପ୍ରେମ କାହାଣୀ ଭିନ୍ନ ଧାତୁରେ ଗଢ଼ାହେବାକୁ ବାଧ୍ୟ । ତେଣୁ ସେହି ପ୍ରକାର ଗପରେ ନିଜର ନିର୍ଦ୍ଧାରିତ ପାଠକ ଗୋଷ୍ଠୀ (target readership) ପ୍ରତି ଖିଆଲ ରଖିଥିବ । ଯେମିତିକି ତାଙ୍କ ପାଇଁ ତୁମ ଗପ ଅଭିନବରୁ ବଳି ଉଦ୍‌ଭଟ ମନେ ନ ହୁଏ । ମନେରଖ ମୋ ପାଠକର ସାପେକ୍ଷ ସହ-ଅନୁଭୂତି ହରଇଲେ ତୁମ ଗପ ତା'ର ଉଚିତ ମୂଲ୍ୟ ହାସଲ କରିପାରିବ ନାହିଁ । ଭିନ୍ନ ସୌରଜଗତର ଜ୍ୟୋତିଷ୍କମାନଙ୍କ ବିଷୟରେ ଲେଖ ନାହିଁ ବୋଲି କହୁ-ନାହିଁ, କିନ୍ତୁ ଅଭିନବତ୍ୱର ଚମକ ପାଇଁ ଯେତିକି ଦରକାର, ତା'ଠାରୁ ଦୂରକୁ ଗଲେ, ତାକୁ ତୁମ ଗପର ମୁଖ୍ୟନାୟକ ବା ମୁଖପାତ୍ର କଲେ ବିପଦ । ହଁ, ତୁମେ ଯଦି ତାଙ୍କ ସମାଜରେ ପୂରାପୂରି ମିଶି ଯାଇ ପାରିଛ, ତେଣୁ ତାଙ୍କ ସଂସାର-ପହରଣର ପ୍ରତିଟି ରଙ୍ଗ ପ୍ରତିଟି ଛିଦ୍ର ଦେଖେଇ ଦେଇ ପାରିବ, ତାହାହେଲେ ହୁଏତ ତୁମ ପାଠକ ତାକୁ ଆଉ ଏକ କିସମର ସତ ବୋଲି ନିଜର କରିପାରିବ । ଯେମିତି ଗୋପୀନାଥ ମହାନ୍ତି କୋରାପୁଟରେ କନ୍ଧ ସମାଜରେ ମିଶି ଯାଇ "ଅମୃତର ସନ୍ତାନ" ଲେଖି ପାରିଲେ, ଜର୍ଜ

ଅର୍‌ୱେଲ୍ ବାରବୁଲ ଭିକାରୀଙ୍କ ଦଳରେ ମିଶିଯାଇ ଲେଖିଲେ ''Down and out in Paris and London'' । କିନ୍ତୁ କ୍ଷୁଦ୍ର ଗଳ୍ପରେ ସେଇଭଳି ବହୁମୁଖୀ ଚିକିନିଖିର ମାନଚିତ୍ର ଆଂକି ଦେଇ ହେବ କି ?

ତୃତୀୟରେ ଗୋଟିଏ ଭୀରୁ ସୁପାରିଶ । ତାକୁ ବୁଝି ବିଗ୍ଭରି ଅମାନ୍ୟ କରି ପାରିଲେ ମୁଁ ଖୁସି ହେବି । ଲେଖକ ହୋଇ ଯେତେ ନିରପେକ୍ଷ ନିର୍ଲିପ୍ତ ହେବାର ବଡ଼େଇ କଲେ ମଧ୍ୟ କେତେଗୁଡ଼ିଏ ଜନ୍ମଗତ ସଂସ୍କାରଗତ ଲକ୍ଷଣ ରେଖା ରହିଯାଇଥାଏ । ତାକୁ ଅତିକ୍ରମ କଲେ ଯେଉଁ ଦୁର୍ଗନ୍ଧର ମୁକାବିଲା କରିବାକୁ ପଡ଼େ ତାକୁ ଜିଣିପାରିବ ତ ? ନାଁ ନାକରେ ରୁମାଲ୍ ଦେଇ କୌଣସିମତେ କାମଟା ସାରିଦେଲେ ଯାଏ ? ଏଇଠି ମନେପଡୁଛି ପ୍ରସିଦ୍ଧ ଚିତ୍ରକାର ଗୋୟାଙ୍କର ଗୋଟିଏ ଛବି, ଯେଉଁଥିରେ ଜଣେ ସ୍ତ୍ରୀଲୋକ ବାନ୍ତି ମାଡ଼ିଲା ପରି ମୁଁହ ବୁଲେଇ ନେଇ ଫାଶି ଖୁଣ୍ଟରେ ଝୁଲୁଥିବା ମଲା-ଲୋକର ପାଟିରୁ ଦାନ୍ତ ଉପାଡୁଛି, କାହିଁକିନା ସେଭଳି ଦାନ୍ତ ଆଶ୍ଚର୍ଯ୍ୟଗୁଣବିଶିଷ୍ଟ ଏକ ଅମୂଲ୍ୟ ଧନ ବୋଲି ତା'ର ବିଶ୍ୱାସ । ବାସ୍ତବତାକୁ ମାତ୍ କରିବା ପାଇଁ ତୁମେ ଏଭଳି ଏକ ଅପ୍ରୀତିକର କାମ ତୁଲେଇ ପାରିବ କି ? ସଚ୍ଚି ରାଉତରାୟଙ୍କର "ମଶାଣି ଫୁଲ"ର ଚଣ୍ଡାଳ ନିଷ୍ଠା ଏବଂ ଉତ୍ସାହର ସହ କୁଆଁରୀର ଶବକୁ ଯେମିତି ପୋଡ଼ି ପାରିଲା ତୁମ ଚରିତ୍ର ତା'ର ସମକକ୍ଷ ହୋଇପାରିବ ? ହେଲେ ଭଲ କଥା, ସେଭଳି ଗପ ବାସ୍ତବ-ଚିତ୍ରଣର ଏକ ଜ୍ୱଳନ୍ତ ଉଦାହରଣ ହୋଇ ରହିଯିବ କାଳକାଳକୁ । କିନ୍ତୁ ମୁଁ ଅନେକ କ୍ଷେତ୍ରରେ ଦେଖିଛି ଯେ ଗାଳ୍ପିକ ନାକରେ ରୁମାଲ୍ ଦେଇ ଲେଖିଛି, ତେଣୁ ଏହିପ୍ରକାର ଚରିତ୍ର ଫୁଟି ଉଠି ପାରି ନାହିଁ । ମଡ଼ା ହେଉ ବା ବିଷ୍ଠା, ସେକସ୍ ବା ହଣାକଟାର ଦୃଶ୍ୟ, ଚରିତ୍ରଟି ସୀମା ଟପିଲା କ୍ଷଣି ସିକୁଡ଼ି ଯାଇଛି । ଏହି ଦୃଷ୍ଟିରୁ ମୋର ନିବେଦନ ଯେ ଯଦିଓ ଯେକୌଣସି ଚରିତ୍ରକୁ ଭଲପାଇବା ଅନାବଶ୍ୟକ, ତା'କୁ ଚିହ୍ନେଇବାର ବିଭାଗକୁ କେତେଦୂର ସମ୍ଭାଳି ପାରିବ ବିଗ୍ଭର କର । ନ ହେଲେ ଛାଡ଼ିଦିଅ । ତାକୁ ଅଧାପନ୍ତରିଆ କରି ଥୁଅ ନାହିଁ । ନିରକ୍ରିଆ ବାସ୍ତବରେ ଲାଭଠାରୁ କ୍ଷତି ଅଧିକ ।

ନିରୂପଣ ପରେ ନିର୍ମାଣ । କେମିତି ଚରିତ୍ରକୁ ଆପଣା ଗପ ଲାଗି "ଚରିତ୍ର" ଟିଏ କରି ଗଢିବା । ଆସନ୍ତା କିସ୍ତିରେ ସେ ବିଷୟରେ କଥାଭାଷା ହେବା ।



( ୬ )

ଚରିତ୍ରକୁ ନିର୍ମାଣ କରିବାର ଅର୍ଥ ତୁମର କଳ୍ପିତ ସୌଧ, ମନ୍ଦିର, ସମାଧି ଇତ୍ୟାଦିର ମତଲବ ଓ ମର୍ଯ୍ୟାଦାକୁ ଖାପ୍ ଖାଇଲା ପରି ବାସିଂଦାମାନଙ୍କୁ ଗଢି ତୋଳିବା । ନିରୂପଣ ହେଲା ଚିହ୍ନି ରଖିବା, ଯାହା ଗପଲେଖାର ପୂର୍ବ କଥା । ହୁଏତ ଲେଖିବାର କ୍ରମରେ ତାକୁ ଅଳ୍ପ ବହୁତ ବଦଳେଇ ହେବ, କିନ୍ତୁ ମୋଟାମୋଟି ସେ ତା'ର ନିଜତ୍ୱର ପହରଣ ପିନ୍ଧି ଠିଆ ହୋଇଗଲାଣି ତୁମ ସାମ୍‌ନାରେ । ତେଣୁ ଗପ ଲେଖିବା ମଝିରେ ତାକୁ ବେଶ ବଦଳେଇବାକୁ କହିବା ମାନେ ନୂଆ ଗପଟିଏ ଲେଖିବା । କିନ୍ତୁ ନିର୍ମାଣ ହେଲା ଗଢି ତୋଳିବା, ଯେଉଁ କଳାତ୍ମକ କାମର ଦାୟିତ୍ୱକୁ ଗପ ଲେଖାର କ୍ରମରେ ଓ ମାଧ୍ୟମରେ ହିଁ ତୁଲେଇବାକୁ ପଡ଼ିବ । ଲେଖୁ ଲେଖୁ ତୁମ ଘଟଣାର ସଂଘାତରେ, ଭାବନା-ଚେତନାର ପ୍ରବାହରେ, ତଥା ଭାଷାର ସଂଗୀତରେ ତା'ର ଜନ୍ମଗତ ନିଜତ୍ୱକୁ ଏଭଳି ସୁସ୍ପଷ୍ଟ ଓ ସୁଦୃଶ୍ୟ କରିବାକୁ ପଡ଼ିବ ଯେପରିକି ସେ ଅନ୍ୟତମ ମଣିଷ ମାତ୍ର ନ ହୋଇ ସ୍ୱତନ୍ତ୍ର ସୁନ୍ଦର "ଚରିତ୍ର"ଟିଏ ହୋଇ ପାରିବ ।

କଥାଟାକୁ ଜଟିଳ କରିଦେଇ ପାଣ୍ଡିତ୍ୟ ଦେଖେଇବା ମୋର ଉଦ୍ଦେଶ୍ୟ ନୁହେଁ । ତୁମର ଯଦି ବୁଝିବାରେ କିଛି ଅସୁବିଧା ହେଉଥାଏ, ତା'ର କାରଣ ହେଉଛି ଯେ ଦୁଃଖର ବିଷୟ ମୁଁ ତୁମକୁ ଗୋଟାଏ "ମିଛ"ର କାରିଗରି ଶିଖେଇବାକୁ ବସିଛି । ଯେଉଁ ମିଛର ମାହାତ୍ମ୍ୟକୁ ସ୍ୱୀକାର କରି ସେହି ଅନୁଯାୟୀ ଚରିତ୍ରଟିକୁ ଗଢି ନ ତୋଳିଲେ ପାଠକ ନିରାଶ ହେବ । ତା'ର ସାହିତ୍ୟ-ଶୋଷ ମେଣ୍ଟିବ ନାହିଁ ।

ମନେଥିବ ପୂର୍ବରୁ କହିଛି ଯେ ଗପର ଗୋଳେଇ ଗୋଟିଏ ଆରୋପିତ କୃତ୍ରି-ମତା; ସତକଥା କହିବାକୁ ଗଲେ ଜୀବନର ଗୋଟାଏ ଗଢ଼ଣ ଅଛି (ତେଣୁ ଅର୍ଥ ଅଛି) ବୋଲି ଆମର ମନେ ହୁଏ ନାହିଁ । କିନ୍ତୁ ଆମେ ବିଶ୍ୱାସ କରିବାକୁ ଚାହୁଁ ଯେ ଅଛି, ଅଛି, ଅଛି । ସେଇ ହେଉଛି ବିଶ୍ୱବିଧାତାଙ୍କ ପ୍ରତି ଆମର ଶ୍ରଦ୍ଧା ଓ ପ୍ରଣାମ ।

ଠିକ୍ ସେହିପରି ଭାବରେ ମୋର ନିବେଦନ ହେଉଛି ଯେ ସତକଥା କହିବାକୁ ଗଲେ ମଣିଷ-ଚରିତ୍ରର ଗଢଣ ନାହିଁ କି ସ୍ଥିତି ନାହିଁ । ପଦେ କଥାରେ ବାଗବାଉଣ୍ଡ ନାହିଁ । ଗାଳ୍ପିକ ଉଇଲିଅମ୍ ସାରୋୟାନ୍ କହିଲା ପରି ସେ ଏମିତି ଗୋଟିଏ ଜନ୍ତୁ ଯେ

ତାକୁ ଧରୁ ଧରୁ ସେ ପଳେଇଗଲାଣି, ବଦଳିଗଲାଣି, କେଉଁ ଶିଖରକୁ ଉଠିଗଲାଣି, କିମ୍ବା ମିଟି ହଜି ଗଲାଣି । କିନ୍ତୁ ହାରିଗଲେ ଚଳିବ ନାହିଁ । ନିରୂପିତ, ଏବଂ ଚିହ୍ନା ହେଲେ ମଧ୍ୟ ନୂଆ ମଣିଷ ଚରିତ୍ରକୁ "ଚରିତ୍ର"ଟିଏ କରି ଗଢିବାକୁ ପଡିବ । ଏଇ ଧରିବା-ବାନ୍ଧିବାର କ୍ଳେଶ ହେଉଛି କଳା । ଯାକୁ ହିଂସା ବୋଲି କୁହ ନାହିଁ, କୁହ ନାହିଁ ଯେ ଏତଦ୍ୱାରା ବାସ୍ତବତାର ଅବମାନନା କରଗଲା । ବରଂ ଧରିନିଅ ଯେ ଏହାର ଅନ୍ୟ ନାମ ଅନୁଶାସନ । ଏବଂ ଏହି କଳାତ୍ମକ ପ୍ରକ୍ରିୟା ଦ୍ୱାରା ଲେଖକ-ପାଠକ ଆପଣାର ସମ୍ପୂର୍ଣ୍ଣ ଅର୍ଥାତ୍ ସମ୍ଭବିତ ଓ ଅଭିଳଷିତ "ସତ" (ଯାହା ପୂର୍ବରୁ କହିଛି) ଆଡ଼କୁ ବୋଧହୁଏ କିଛିଟା ଆଗେଇ ଯାଇ ପାରିବ ।

ମନେପଡୁଛି ଲୁଇଗି ପିରାଣ୍ଡେଲୋଙ୍କ ନାଟିକା "ଗୋଟିଏ ରଚୟିତାଙ୍କୁ ଖୋଜି ବୁଲୁଥିବା ଛଅଟି ଚରିତ୍ର(Six characters in search of an auther)"ମାନଙ୍କ ଜଣେ କୁହାଳିଆ ଚରିତ୍ର କେଡ଼େ ଦଂଭରେ କହିଗଲେ ଏଇ କଥା କେତେପଦ, ନାଟ୍ୟଶାଳାର ଅଧିକାରୀଙ୍କୁ–

"ଆଜ୍ଞା, ଚରିତ୍ର ମଣିଷକୁ ସଦାସର୍ବଦା ପଚାରିପାରେ—ତୁମେ କିଏ କହିଲ ଦେଖି ? କାରଣ ଚରିତ୍ର ଆପଣା ବିଶିଷ୍ଟ ଜୀବନକୁ ନେଇ ଧନୀ, ଯେଉଁଥିପାଇଁ ସେ କେହି ଜଣେ । ଅଥଚ ମଣିଷ କେହି ନୁହେଁ ହୋଇ ରହିବା ସ୍ୱାଭାବିକ ।"

ଏଇ ବିଜ୍ଞପ୍ତିର ବ୍ୟାଖ୍ୟା କରିବାକୁ ଯାଇ ସେ ଅନ୍ୟତ୍ର କହିଛନ୍ତି ଯେ, ପ୍ରତ୍ୟେକ ମଣିଷର ବିବେକ (ଏଠି ବିବେକକୁ ବ୍ୟାପକ ଅଂତରାତ୍ମା ଅର୍ଥରେ ନେବାକୁ ହେବ) ଏକ ବୋଲି ମନେହୁଏ, କିନ୍ତୁ ତାହା ପ୍ରକୃତରେ ଅନେକ ଏବଂ ଚଳଚଞ୍ଚଳ । କିନ୍ତୁ ସେ ଭାବେ ଯେ ଏଇ ମୋର ସ୍ୱତନ୍ତ୍ର ବ୍ୟକ୍ତିତ୍ୱ । ଯାହା ଏକ ଅସତ୍ୟର ଭ୍ରାଂତି । ଏବଂ ସେଇ ଭ୍ରାନ୍ତିର ସ୍ୱରୂପ ଜଳଜଳ ହୋଇ ଦିଶିଯାଏ ତା' ନିଜ ଆଖିକୁ, ଯେତେ-ବେଳେ ସେ କେଉଁ ଏକ କ୍ରିୟା-ପ୍ରତିକ୍ରିୟାର ଥେଣ୍ଟାରେ ଲାଖିଯାଏ, ତହୁଁ ନିଜକୁ ଅସ୍ୱୀକାର କରେ, ପ୍ରତିବାଦ କରେ ଯେ ସେ ଏମିତି ନୁହେଁ ସେମିତି, ଦୟାକରି ମୋତେ ଖାଲି ଏଇଆକୁ ନେଇ ବିଚାର କର ନାହିଁ, ମୋର ସମଗ୍ର ଜୀବନ ଏଇ ଗୋଟିଏ ଖିଅରୁ ବାହାରି ନାହିଁ କି ଏଇଥିରେ ଛିଡ଼ି ନାହିଁ ... ଇତ୍ୟାଦି ।

ଚରିତ୍ର ମହୋଦୟଙ୍କ ଥେଣ୍ଟାରେ ଲାଗିଯିବା କଥାଟା ମୋତେ ଭାରି ମଜା ଲାଗିଛି । କାରଣ ମୁଁ ମୋ ନିଜର ଅନେକ ଗପରେ ଏଇ ସଙ୍କଟର ଆର୍ତ୍ତନାଦ ଶୁଣେ-ଇଛି ମୋ ପାଠକମାନଙ୍କୁ । ମଣିଷର ବିପରୀତମୁଖୀ ବିଭିନ୍ନତା, ଯାହା ବାହାରେକୁ

ଜଣାପଡ଼େ ନାହିଁ (ସେ ନିଜେ ମଧ୍ୟ ପ୍ରାୟଶଃ ଜାଣିପାରେ ନାହିଁ), ଏବଂ ସେଇ ଛାଇ-ଆଲୁଅର ନିର୍ମମ ଖେଳକୁ ନେଇ ମୁଁ ଅନେକ ଗପ ଲେଖିଛି । ତାହାହେଲେ ମୁଁ ବି କାହିଁକି ନିର୍ମିତ "ଚରିତ୍ର"ର ପକ୍ଷପାତୀ, ନୈସର୍ଗିକ ମଣିଷର ନୁହେଁ, ଏଇ ପ୍ରଶ୍ନ ତୁମ ମନରେ ଆସିପାରେ । ତୁମେ ପଗ୍ଭରିପାର ଯେ ମଣିଷର ବିକଟ ଏବଂ ହାସ୍ୟାସ୍ପଦ ଚଳଚଞ୍ଚଳତାକୁ ନେଇ କାହିଁକି ଗପ ଲେଖିହେବ ନାହିଁ, କେଉଁଥିପାଇଁ ଆଜିର ଲେଖକ ଉପରୋକ୍ତ ଚରିତ୍ରମହୋଦୟଙ୍କ ପୁରୁଣାକାଳିଆ ଦାମ୍ଭିକତାକୁ ମାନିନେବ । ତା'ର ଉତ୍ତରରେ ମୋର ସଫେଇ ହେଉଛି : (କ) ମୁଁ ମଧ୍ୟ ପାରିନାହିଁ । ମଣିଷ ମନର ଚଳଚଞ୍ଚଳତା ଏତେ ବ୍ୟାପକ, ବିକ୍ଷିପ୍ତ ଏବଂ ଅବିନ୍ୟସ୍ତ ଯେ ମୁଁ ମଧ୍ୟ ପ୍ରଥମେ "ଚରିତ୍ର"ଟିଏ ଗଢ଼ିନେଇ ତା'ପରେ ଯାଇଁ ତାକୁ ଥେଣ୍ଟାରେ ଝୁଲେଇଛି । ତା'ଛଡ଼ା ଅନ୍ୟ ଉପାୟ ନାହିଁ । ଆଗେ ଧରିବାକୁ ହେବ, ମୁଠେଇବାକୁ ହେବ, ତା'ପରେ ଯୋଉକଥା । (ଖ) ମୁଁ ଏଠି କେବଳ କ୍ଷୁଦ୍ରଗଳ୍ପ କଥା କହୁନାହିଁ । ଗୋଟିଏ ଛୋଟ ଗଳ୍ପରେ ଗଢ଼ିତୋଳିବାର ଦାୟିତ୍ୱକୁ ହୁଏତ ଅଳ୍ପକରେ ସାରିଦେଇ ହେବ, ଚରିତ୍ରର ଅଗଠିତ ଅପରିଣତ ଅଂଶମାନଙ୍କୁ ପାଠକର କଳ୍ପନା ଉପରେ ଛାଡ଼ିଦିଆ ଯାଇ ପାରିବ, ସତେକି ଲେଖକ ଗ୍ଭହୁଁଥିଲା ଖାଲି ସୂଚନା ଦେବା ପାଇଁ, ସେଣିକି ପାଠକ ଚରିତ୍ରଟିକୁ ଗଢ଼ୁ ତା' ନିଜ ମନମୁତାବକ । କିନ୍ତୁ ବଡ଼ଗପ ବା ଉପନ୍ୟାସର ବିସ୍ତୃତ ପରିସର ମଧ୍ୟରେ ସେହି ପ୍ରକାର ଠକାମି ଚଳିବ ନାହିଁ । ଗଢ଼ିତୋଳିବାକୁ ହେବ । ଗୋଟିଏ "ଚରିତ୍ର" । ଯାହାକୁ ଧରିହେବ, ମୁଠେଇ ହେବ, ପିରାଣ୍ଡେଲୋଙ୍କ ଉକ୍ତ ଚରିତ୍ରଙ୍କ ଭଷାରେ "ଊଣା ବାସ୍ତବ ହେଲେ ହେଉ ପଛେ ଅଧିକ ସତ (less real perhaps but truer)" ବୋଲି ମନେକରି ଆନନ୍ଦରେ ଗ୍ରହଣ କରି ହେବ ।

ମୋ ମତରେ ପ୍ଲଟ୍ ଲକ୍ଷି ନିରୂପିତ ଏବଂ ଅଧିକାଂଶରେ ଭଙ୍ଗାଯୋଡ଼ା କଳ୍ପିତ ମଣିଷକୁ "ଚରିତ୍ର" ରୂପରେ ଗଢ଼ି ତୋଳିବାକୁ ହେଲେ ତାକୁ ଯୋଡ଼ିଏ ଗୁଣରେ ଅଭ୍ୟସ୍ତ କରେଇବାକୁ ପଡ଼ିବ: (୧) ସଂଶ୍ଳିଷ୍ଟତା, (୨) ସଚେତନତା ।

ସଂଶ୍ଳିଷ୍ଟତା (Consistency) ର ଅର୍ଥ ନୁହେଁ ଯେ ଚରିତ୍ରର ଭବଭବନା କ୍ରିୟାକଳାପରେ କେବେହେଲେ କୌଣସି ବୈଷମ୍ୟ ଜଣାପଡ଼ିବ ନାହିଁ । କିନ୍ତୁ ସେଥିର ମାନେ ଏବଂ ମୂଳଥିବା ଉଚିତ । ଅର୍ଥାତ୍ ଏଭଳି ଏକ ଅସମଞ୍ଜସ ଯାହାକୁ ଭ୍ରାନ୍ତ ଚରିତ୍ର ସ୍ୱୀକାର କରିବାକୁ ଗ୍ଭହିଁବ ନାହିଁ, ସ୍ୱୀକାର କଲେ ମଧ୍ୟ ଯଥାର୍ଥ ଏବଂ ଯୁକ୍ତିଯୁକ୍ତ ବୋଲି ମନେକରିବ । ଅନ୍ୟ ଅର୍ଥରେ ଯାହା ପ୍ରଭେଦ ବୋଲି ଜଣା ପଡୁଛି, ତାହା ହୋଇଥିବ ହାଇଫେନ୍, ଚରିତ୍ରକୁ ସରଳରୁ ଜଟିଳ କରିବା ପାଇଁ......ଖାଲି ଶ୍ଳେଷ

ରସିକ ପାଠକ ହିଁ ବୁଝିବ ଯେ ବିଚରଟି କେଡ଼େ ବିଚିତ୍ର ! ମୁଁ କିଛି ଦିନ ତଳେ ଜଣେ ଆଧୁନିକ ଲେଖକଙ୍କର ଗୋଟିଏ ଗପ ପଢିଥିଲି , ଯେଉଁଥିରେ ଜନୈକ ସମାଜପତି ପତିତମାନଙ୍କ କଲ୍ୟାଣ ପାଇଁ ପ୍ରକାଶ୍ୟରେ ଯଥେଷ୍ଟ ଗର୍ଜନତର୍ଜନ କଲା ପରେ ଘରକୁ ଫେରି ଆଶ୍ରୟ ଲୋଡୁଥିବା କେଉଁ ଏକ ଗଣ୍ଡୀଖଣ୍ଡୀକୁ ଅବିଳମ୍ବେ ଘଉଡ଼ି ଦେଇଥିଲେ । ଏତଦ୍ଵାରା ଲେଖକ ଚରିତ୍ରର ଲୋକ ଦେଖାଣିଆ ଭବମୂର୍ତ୍ତି ଏବଂ ବାସ୍ତବ ଆଚରଣର ବିରୋଧ ଦେଖାଇବାକୁ ଚାହିଁଲେ । ଯାହା ଆମର ସଭ୍ୟ ସମାଜରେ ଦୁର୍ଲଭ ନୁହେଁ । ଭଲ କଥା । କିନ୍ତୁ ମୋର ଆପତ୍ତି ହେଉଛି ଯେ ଏଇ ବୈଷମ୍ୟ, ହଠାତ୍–ଓଲଟିଯିବା ପଣର ହୁନ୍ଦର ଫୁଟି ଉଠିଲା ନାହିଁ । ନେତାଜଣକ ନିଜର "ଚରିତ୍ର" ଜାହିର୍ କରି ପାରିଲେ ନାହିଁ । ଓଲଟିଗଲେ ମଧ୍ୟ ଇଏ ମୋର ଓଲଟାପଣ ନୁହେଁ ବୋଲି ନିଜକୁ ବୁଝେଇଲେ ନାହିଁ କିମ୍ବା ପାଠକଙ୍କୁ ତାଙ୍କ ଆତ୍ମ-ଶଠ ମହତ୍ତ୍ଵର ସ୍ଵାଦ ଚଖେଇ ପାରିଲେ ନାହିଁ ।

ଦ୍ଵିତୀୟରେ ସଚେତନତା । ବିଖ୍ୟାତ ସମସାମୟିକ ଔପନ୍ୟାସିକ ଆଇରିସ୍ ମର୍ଡକ୍ ତାଙ୍କର ଉପନ୍ୟାସ "ଦି ବ୍ଲାକ୍ ପ୍ରିନ୍ସ୍"ର ମୁଖ୍ୟନାୟକର ମୁହଁରେ କୁହାଇଲେ ଯେ କଳା-ଚରିତ୍ରମାନଙ୍କର ଆତ୍ମସମ୍ମାନ କାହିଁରେ କଅଣ, ଅଥଚ ଜୀବନ ଚରିତ୍ରମାନଙ୍କର ସେହିଗୁଣଟି ନାହିଁ କହିଲେ ଚଳେ । ତଥାପି (ବୋଧହୁଏ ସେଇଥିପାଇଁ) ଜୀବନ ସଦାବେଳେ ଏବଂ କେତେ ବିକଳ ହୋଇ କଳାକୁ ନକଲ କରିବାକୁ ଚାହେଁ ! କିନ୍ତୁ କିଏ ନକଲ କରିବାକୁ ବିକଳ ହୁଏ ? ସାଧାରଣ ଜଡ଼ ମଣିଷ ନୁହେଁ, ସାଧାରଣ ସଚେତନ ମଣିଷ । ସଚେତନତାର ଅର୍ଥ ବୌଦ୍ଧିକତା ନୁହେଁ । ପ୍ଲଟ୍‌ରେ ବୌଦ୍ଧିକ ଚରିତ୍ରର ଆବଶ୍ୟକତା ଥିଲେ ସେ କଥା ଭିନ୍ନ, କିନ୍ତୁ ସେହି ସମ୍ପ୍ରଦାୟ ସଂଖ୍ୟାଲଘୁ ହୋଇଥିବାରୁ ସେଥିରୁ ସବୁବେଳେ ଚରିତ୍ରଟିଏ ଯୋଗାଡ଼ କରିବାକୁ ବସିଲେ ତୁମର ପାଠକସମ୍ପ୍ରଦାୟ ଅତ୍ୟନ୍ତ ସୀମିତ ହୋଇ ରହିଯିବ । କିନ୍ତୁ ଚରିତ୍ରଟି ଏମିତି ହୋଇଥିବା ଉଚିତ ଯେ ପ୍ଲଟ୍‌ର ପ୍ରତ୍ୟେକ ମୋଡ଼ରେ, ପ୍ରତି ଘଟଣାର ସଂଘାତରେ ସେ ଅଳ୍ପବହୁତ ଚେଇଁ ଉଠିବ, ଚମକିବ, ବୌଦ୍ଧିକ ବିଶ୍ଳେଷଣ କରି ନ ପାରିଲେ ମଧ୍ୟ କିଛି ହେଲେ ଭବିବ, କହିବ, କରିବ ଯଦ୍ଵାରା ତା'ର ଚାରିତ୍ରିକ ବିଶେଷତ୍ଵ ଫୁଟି ଉଠିବ, ବାନ୍ଧିହୋଇ ଆସିବ । ମାନୁଛି ଯେ ବିଶାଳ ମଣିଷ ସମାଜରେ ଅନେକ ଲୋକ ଅଛନ୍ତି, ବିଶେଷତଃ ସଂସ୍କାରବଦ୍ଧ "ତୃତୀୟ ପୃଥିବୀ"ରେ ଯେଉଁମାନଙ୍କ ପ୍ରତିକ୍ରିୟା ଉଧେଇ ପାରେ ନାହିଁ, ସଂସ୍କାରସମ୍ମତ ରୁଟିନ୍‌ରେ ମିଳେଇ ଯାଏ । ସେମାନଙ୍କୁ ଗପ ଭିତରକୁ ଡାକି ଆଣିଲେ କ୍ଷତି ନାହିଁ, କେତେକ କ୍ଷେତ୍ରରେ ଡାକିଆଣିବା ଉଚିତ, କିନ୍ତୁ ସେମାନଙ୍କୁ ମଞ୍ଚରେ ଠିଆ

କରେଇ ହେବ କି ? ଅର୍ଥାତ୍ ସେମାନେ ଗପର ମୁଖ୍ୟ ଚରିତ୍ର ଅର୍ଥାତ୍ Protagonist ହୋଇ ପାରିବେ ବୋଲି ମୋର ବିଶ୍ୱାସ ନୁହେଁ । ହଁ, ସେମାନଙ୍କ ପାଇଁ ଗପ ଲେଖା ଯାଉ, କିନ୍ତୁ ତାଙ୍କ ତରଫରୁ କହିବାକୁ ହେବ ଆଉ ଜଣକୁ, ସହ-ଅନୁଭୂତି (empathy) ରୁ ଯେତିକି ମିଳିଲ ସେତିକି ନେଇ; ଏବଂ ସେଇ ମଣିଷଟି ହେବ ଗପର ମୁଖ୍ୟ ଚରିତ୍ର ।

କିନ୍ତୁ ସାବଧାନ, 'ଚରିତ୍ର'ଟିଏ ଗଢ଼ି ତୋଳିବାର ସ୍ୱାଧୀନତାରେ ଭସି ଯାଇ ଶ୍ରଦ୍ଧେୟ ସର୍ଜନାଟିକୁ ଜୀବନରୁ ବଳି ସ୍ଫୀତ (larger than life) ହେବାକୁ ଦିଅ ନାହିଁ । ହୁଏତ ଐତିହାସିକ, ପୌରାଣିକ ଅବା କୌଣସି ବିଶେଷ ସାମାଜିକ-ଜାତୀୟ ସଙ୍କଟର ପ୍ରତିକାର ପାଇଁ ଲେଖିବାକୁ ପଡ଼ିଥିବା ଉଦ୍ଦେଶ୍ୟମୂଳକ ଗପରେ ସେହିପ୍ରକାର ଚରିତ୍ରର ଭୂମିକା ରହିଛି । କିନ୍ତୁ ସୁସ୍ଥ ଶାନ୍ତ ବୌଦ୍ଧିକ ସ୍ତରରେ ଲେଖାଯାଉଥିବା ଆଧୁନିକ କଥା ସାହିତ୍ୟର ପରିପ୍ରେକ୍ଷୀରେ ସେଭଳି ଦେବତା ଅବା ଦାନବମାନଙ୍କର 'ନାଗପାଶରୁ ନିଜକୁ ରକ୍ଷା କରିବାକୁ ହେବ । ତା'ବୋଲି ତୁମର ଚରିତ୍ର ଅତିଶୟତା (intensity) ର ଅନୁଭବ ଆଣି ଦେବ ନାହିଁ, ସ୍ୱର୍ଗ ଅବା ନର୍କର ଝଲକ ଦେଖାଇବ ନାହିଁ, ତା'ନୁହେଁ, ବରଂ ତଦ୍ୱାରା ତୁମର ଗପ ଆହୁରି ବର୍ଣ୍ଣାଢ୍ୟ ହୋଇ ଉଠିବ । କିନ୍ତୁ ସେଇ ଅନୁଭବ ହୋଇଥାଉ ଅଙ୍ଗେ ନିଭେଇଲ ପରି । ଏବଂ ମନେରଖ ଯେ ଅଂଗ କେବଳ ମସ୍ତିଷ୍କକୁ ନେଇ ଗଢ଼ା ନୁହେଁ, ସେଥିରେ ଅଛି ପାଞ୍ଚଟି ଇନ୍ଦ୍ରିୟର ଅଙ୍ଗ, ସେଥିର ଭୋକ, ସେଥିର ଜ୍ୱାଳା........କାହାଟିକୁ "ନୀଚ" ବୋଲି ମନେକର ନାହିଁ ଏବଂ ମୋତେ କହିବାକୁ ପଡୁଛି ଯେ କାମୁକତାକୁ ତୁଚ୍ଛା ଶାରୀରିକ ପ୍ରକ୍ରିୟା (clinical sex) ର ଅଶ୍ଳୀଳତାରେ ମିଶେଇ ଦିଅ ନାହିଁ । କାରଣ ଏହି ମହା ବଳଶାଳୀ ପ୍ରବୃତ୍ତି ତଥାକଥିତ ଅନ୍ଧ କାମନାରେ ପର୍ଯ୍ୟବସିତ ନୁହେଁ, ଶାରୀରିକ ଜ୍ୱାଳାରୁ ବଳି ଅନେକ ସୂକ୍ଷ୍ମ ଏବଂ ସୁଦୂରପ୍ରସାରୀ ତା'ର ପ୍ରଭୁତ୍ୱ । ଆଶ୍ଚର୍ଯ୍ୟ ହୁଅନାହିଁ , ବେଳେ ବେଳେ ସେଇ ହୁଏ ଭଗବାନଙ୍କ ଦୂତ, ସଇତାନର ନୁହେଁ । ତେଣୁ ତୁମର ଚରିତ୍ରକୁ ସେଥିର ମୁକାବିଲା କରିବା ପାଇଁ ମନା କର ନାହିଁ । ବୁଦ୍ଧିର ଉତ୍କର୍ଷ ତଥା ଆବେଗର ଅତିଶୟତା, ଆବଶ୍ୟକ ଅନୁଯାୟୀ ଉଭୟର ଭାଗମାପ ନେଇ ଝଳିଉଠୁ ତୁମର ଚରିତ୍ର । କିନ୍ତୁ ପଂକଜକୁ ଆକାଶରୁ ତୋଳି ଆଣ ନାହିଁ, ତାକୁ ପଂକରୁ ଉପୁଜାଅ । ତାହାହେଲେ ଯାଇ ଜଣାଯିବ ଯେ ସେ ସତ, ସେଇ ଏକା ସୂର୍ଯ୍ୟଙ୍କୁ ଅନେଇ ରହି ପାରିବ । ମୋଟ ଉପରେ ତୁମ ଚରିତ୍ରଟି ତୁମ ନିଜର ଅନୁଭୂତ-ସଂଭବିତ ମାପକାଠିରେ ଯେତିକି ଉନ୍ନତ

ତଥା ଜୀବନ୍ତ ହୋଇପାରିବ ହେଉ । କିନ୍ତୁ ତା'ବୋଲି ସ୍ଫୀତ,ତହୁଁ ଆତ୍ମଘାତୀ ହେବାକୁ କିଏ କହୁଛି ତାକୁ ?

ମୋର ଆଶା ଯେ ଗାଇ କାଳୀ ହୋଇଥିବ ତଥା କାମଧେନୁ, ସାହିତ୍ୟ-ଚରିତ୍ର କେବଳ ପ୍ରତିଚ୍ଛବି ନ ହୋଇ "ସଂପୂର୍ଣ୍ଣତା"ର ମୋହ ଆଣିଦେବ, ଚରିତ୍ର "ଚରିତ୍ର"ପଦକୁ ଭଠୁ । ହେଲେ କେଉଁ ସ୍ୱର୍ଗକୁ ପାତାଳକୁ ଉଡି ନ ଯାଉ—ଏଇ କଠିଣ ବିଦ୍ୟା ଶିଖାଇ-ବାରେ ମୁଁ ତ୍ରୁଟି କରି ନାହିଁ । ତେବେ ତ୍ରୁଟି ଥିଲେ ଥିବ ମୋର, ତଥ୍ୟର ନୁହେଁ । ଗପରୁ ବଳି ସାହିତ୍ୟର ଚରିତ୍ର ଏକ କଠିଣ ସାଧନାର ବରଦାନ । ତେଣୁ ଆନନ୍ଦମୟ ।

ସାର୍ଥକ ଚରିତ୍ରଟିଏ ଗଢି ତୋଳିବା ପାଇଁ ତାକୁ ଅନ୍ତର୍ମୁଖୀ ହେବାକୁ କହିବା ନା ବହିର୍ମୁଖୀ ? ବ୍ୟକ୍ତି ଚେତନା ନା ସମାଜ ଚେତନା, କାହା ଉପରେ ଅଧିକ ଗୁରୁତ୍ୱ ଦେବା ଉଚିତ ? ପୁଣି ଚରିତ୍ରକୁ କ'ଣ ସଂପୂର୍ଣ୍ଣ ସ୍ୱାଧୀନତା ଦେବା ନା ସ୍ୱାୟତ୍ତଶାସନ ? ସେ ଯେତେହେଲେ ଲେଖକର ସନ୍ତାନ, ତେଣୁ ତା'କୁ ଯଦି (ପ୍ରକାଶ୍ୟରେ ନ ହେଉ ପଛେ ପରୋକ୍ଷରେ) ଲେଖକର ଜୀବନଦର୍ଶନକୁ ପ୍ରମାଣିତ ଅବା ପ୍ରଚାରିତ କରିବାକୁ କୁହାଯାଏ, ସେହି ନିର୍ଦ୍ଦେଶକୁ କ'ଣ ଅନ୍ୟାୟ ବୋଲି କୁହାଯିବ ? ଚରିତ୍ର ନେଇ ଏହି ପ୍ରକାର କେତୋଟି ପ୍ରଶ୍ନର ଆଲୋଚନା ଆସନ୍ତା କିସ୍ତିରେ କରିବା ।



ଚରିତ୍ର ନିର୍ମାଣକୁ ନେଇ ଯେଉଁ କେତୋଟି ପ୍ରଶ୍ନ ଉତ୍‌ଥାପନ କରିଥିଲି ଗତ ଥର, ସେଗୁଡ଼ିକ ଯେ ଆମ ବିଷୟବସ୍ତୁର ଆଲୋଚନା ପାଇଁ ବିଶେଷ ଆବଶ୍ୟକ ତା' ନୁହେଁ । ତଥାପି ପଗ୍ଭରିଲି ଏବଂ ପ୍ରତ୍ୟେକର ବିନମ୍ର ଉତ୍ତର ଦେବାକୁ ଯାଉଛି, କାହିଁକିନା ସାଧାରଣତଃ ସଭା ସମିତିରେ ଲେଖକକୁ ଏହି ପ୍ରକାର ବିତର୍କର ସମ୍ମୁଖୀନ ହେବାକୁ ପଡ଼େ ।

ଅନ୍ତର୍ମୁଖୀ ନା ବହିର୍ମୁଖୀ ? ସହଜ ଉତ୍ତର ଯେ ତୁମେ ଆପଣା ଅନୁଭୂତି-ନିରୀକ୍ଷଣ-କଳ୍ପନାକୁ ନେଇ ଯେଉଁ ପ୍ରକାର ପ୍ଲଟ୍ ଲଖି ଯେଉଁଲି ଚରିତ୍ରଟିଏ ଠିକଣା କରିଛ, ତାକୁଲ ତ "ଗଢ଼ିବା" କଥା । ସେ ବେଶିଭାଗ ବାହାରକୁ ଅନେଇବ ନା ନିଜ ଭିତରକୁ, ଇତ୍ୟାଦି ଆଚରଣ ତ ତା'ର ଜନ୍ମଗତ ନିଜସ୍ୱ ଉପରେ ନିର୍ଭର କରେ, ତେଣୁ ଲେଖିଲାବେଳେ ପୁଣି ତାକୁ ଏ ବିଷୟରେ ପାଠ ପଢ଼େଇବା କ'ଣ ଉଚିତ ହେବ ? ସତ କଥା । ତଥାପି ଚେତାବନୀ ସୂତ୍ରରେ ମୋର କିଛି କହିବାକୁ ଇଚ୍ଛା ହେଉଛି । ହୋଇପାରେ ଯେ ଏତଦ୍ୱାରା ଆଲୋଚକର ଲେଖକପଣିଆ, ତେଣୁ ସାପେକ୍ଷତା, ଫୁଟି ଦିଶୁଛି । ହେଲେ ହେଉ ପଛେ, ମୋର ଏହି ସାମାନ୍ୟ ସ୍ୱାଧିକାର ଗ୍ରହଣୀୟ ହେବ ବୋଲି ମୋର ବିଶ୍ୱାସ ।

ଗ୍ଭଟିନ୍-ବହିର୍ଭୂତ, ତେଣୁ ଗଳ୍ପ ଉପଯୋଗୀ, ଭାବ ଭାବନା ତଥା କାର୍ଯ୍ୟକଳା ବାହାରୁ ଆସୁଥିବା କେଉଁ ଏକ ଜ୍ୟୋତି, କେଉଁ ଏକ ଢ଼େଉର ମୁକାବିଲା କରିବା ଛଡ଼ା ଆଉ କଅଣ ? ଏ ହେତୁ ଯେଉଁ ଗପରେ ଏଇ ଦିଆନିଆ ଅଧିକତର ବ୍ୟାପକ ଓ ବଳିଷ୍ଠ, ସେଇ ଗପଟି ସେତିକି ବିଭବଶାଳୀ ହେବ ନାହିଁ କି ? କିନ୍ତୁ ବେଳେ ବେଳେ ସହଜପନ୍ଥା ଅବଲମ୍ବନ କରି ଆମେ ଏହି ଉତ୍କର୍ଷ ଦିଗରେ ଯଥାବିଧି ଆଗେଇ ଯାଇ ପାରୁନାହିଁ । ଯଥା : (୧) ଆମେ ଭୁଲିପାଉ ଯେ ବହିର୍ମୁଖୀତାର ଅବଦାନ ଗୁଡ଼ିକୁ—ସୂର୍ଯ୍ୟାସ୍ତର ଶୋଭା ହେଉ କି ପାଖ ପଡୋଶୀର ବିଚିତ୍ର ବ୍ୟବହାର—କେବଳ ବର୍ଣ୍ଣନା କଲେ ଚଳିବ ନାହିଁ, ପ୍ରତ୍ୟେକର ନ ହେଲେ ମଧ୍ୟ ଅନେକର ସକ୍ରିୟ ସମ୍ମାନ ଦେବାକୁ ହେବ । ଅତଏବ ଅବଦାନଗୁଡ଼ିକରେ ଯଥେଷ୍ଟ ଉସ୍‌କେଇବା ଗୁଣ (stimulus)

ଥିବା ଉଚିତ । ଉପନ୍ୟାସରେ ଏହି ପ୍ରକାର ଆବଶ୍ୟକତା ଅପେକ୍ଷାକୃତ କମ୍ । କିନ୍ତୁ ଗଳ୍ପରେ ନିଷ୍କ୍ରିୟ ଦୃଶ୍ୟ ଦେଖାଇ ଆବକାଶ ନାହିଁ କହିଲେ ଚଳେ । କ୍ଷେତ୍ର ନାହିଁ, ସମୟ ନାହିଁ, ବାହାରୁ ଯାହା ଆସିଛି ତାହା ଏମିତି ହେବା ଉଚିତ ଯେ ଚରିତ୍ରକୁ କିଛି ହେଲେ କରିବାକୁ ପଡ଼ିବ । ଏଇ ହେଉଛି ବହିର୍ମୁଖୀତାର ଦାମ୍, ତା'ର ଅଙ୍କୁଶ । (୨) ଦ୍ୟୋତକର ମୁକାବିଲ୍ଲ (response) କ'ଣ କେବଳ କାର୍ଯ୍ୟକଳାପ ? ମୌଳିକ ଅର୍ଥରେ ଭାବଭାବନା, ବିଶେଷତଃ ଭାବନା କ'ଣ ଜୀବନ୍ତ ମଣିଷମାନଙ୍କୁ ସୃଷ୍ଟିର ଅନ୍ୟ ପ୍ରାଣୀମାନଙ୍କ ଠାରୁ ଭିନ୍ନ କରିଦେଇ ନାହିଁ ? ତେଣୁ ଚରିତ୍ରଟି ଯଦି ତା'ର ପ୍ରତିକ୍ରିୟାକୁ କେବଳ ବାହ୍ୟିକ କାମ ଓ କଥା ଜରିଆରେ ସୀମିତ କରିଦିଏ, ତା' ପଛରେ ଥିବା ଭାବ-ଭାବନାକୁ ଡାକିହାକି ଭଲ ଭାବରେ ଚିହ୍ନାଇ ନ ଦିଏ, ମଣିଷ ହିସାବରେ ସେ ତା'ର ଅମୂଲ୍ୟ ସମ୍ପଦଟିକୁ ଲୁଚେଇ ଦେଉ ନାହିଁକି ? ଏବଂ ତଦ୍ଦ୍ୱାରା ସେ ନିଜ ପ୍ରତି (ତଥା ପାଠକ ପ୍ରତି) ଅନ୍ୟାୟ କରୁଛି ବୋଲି କହିଲେ କ'ଣ ଭୁଲ୍ ହେବ ? ଆପତ୍ତି ଉଠିପାରେ ଯେ ପେଟଯାଟଣାରେ ଆତଯାତ ହେଉଥିବା ଅଧିକାଂଶ ମଣିଷଙ୍କର ଭାବିବାକୁ ସମୟ ନାହିଁ । ତେବେ ମୁଁ ଯାହା ପୂର୍ବରୁ କହିଛି, ମୁଖ୍ୟ ଚରିତ୍ରଟି ଚିନ୍ତାଶୀଳ ନ ହେଲେ ଚଳିବ, କିନ୍ତୁ ସେ ଅନ୍ତତଃପକ୍ଷେ ସଚେତନ ହେବା ଉଚିତ । ଉପସ୍ଥିତ ପ୍ରଶ୍ନର ପରିପ୍ରେକ୍ଷୀରେ ମୁଁ କେବଳ ସଜାଗ ଚେତନାର ଭାବନାକୁ ପ୍ରୋତ୍ସାହନ ଦେବାକୁ ଚାହୁଁଛି, ଚିନ୍ତା ଦୂରର କଥା ।

ମୋଟ ଉପରେ ଅନ୍ତର୍ମୁଖୀତା ଓ ବହିର୍ମୁଖୀତା ମଧ୍ୟରେ ଭାରସାମ୍ୟ ରହିବା ଉଚିତ । ଯଦି ଚରିତ୍ରବିଶେଷକୁ ପ୍ଲଟ୍ ଅନୁଯାୟୀ ବୁଝିବିଚାରି ଅଧିକ ଅନ୍ତର୍ମୁଖୀ ବା ବହିର୍ମୁଖୀ କର ଯାଇ ନ ଥାଏ । ମୋର ଖାଲି କହିବା କଥା ଏତିକି ଯେ ସଚେଷ୍ଟ ନ ହେଲେ ବହିର୍ମୁଖୀତା ଅମଡ଼ା ମାଡ଼ିଯାଏ, ଏବଂ ଅନ୍ତର୍ମୁଖୀତା ପଛରେ ପଡ଼ିଯାଏ, ଯାହା ଉପରୋକ୍ତ କାରଣରୁ ହାନିକାରକ । ତେଣୁ ଗାଳ୍ପିକର ସେଥିପ୍ରତି ସାବଧାନ ରହିବା ଉଚିତ ।

ବ୍ୟକ୍ତି ଚେତନା ନା ସମାଜ ଚେତନା ? ଯାକୁ ମଧ୍ୟ ସହଜ ଉତ୍ତର ଦ୍ୱାରା ଉଡ଼େଇ ଦେଇ ହେବ, ଯେ ଲେଖକ ଯାହା ପାଇଁ ଯାହାକୁ ବାଛିଛି, ତାକୁଇ ଗଢିବା କଥା । ତା' ସତ୍ତ୍ୱେ ଏ ବିଷୟରେ ମଧ୍ୟ ଦି'ପଦ କହିଲେ ଭଲ ହେବ ବୋଲି ମନେ କରୁଛି । କେତୋଟି ଲୋକପ୍ରିୟ ଭ୍ରମର ସଂଶୋଧନ କରିବା ପାଇଁ । ପ୍ରଥମ କଥା ହେଲା ଯେ ଅନ୍ତର୍ମୁଖୀତା ବ୍ୟକ୍ତି ଚେତନାର ଗୁଣ କି ବହିର୍ମୁଖୀତା ସମାଜ ଚେତନାର ଲକ୍ଷଣ ବୋଲି କୁହା ଯାଇ ନ ପାରେ । ସମାଜ ଚେତନାରେ ଜର୍ଜରିତ ମଣିଷ (ଧର

ମୋ ପରି ଜଣେ ମଧ୍ୟବିତ୍ତ ଲେଖକ-ପାଠକ) ଘର ଦପ୍ତରର ଫାଟକ ପାରି ନ ହୋଇ ତା'ର ଦୁଃଖ, କ୍ରୋଧ ଆଦି ପ୍ରତିକ୍ରିୟାକୁ କେବଳ ନିଜକୁ ପଗ୍ଚରି ପଗ୍ଚରି, ତା'କୁ ନିଜ ଭିତରେ ଘାଣ୍ଟି ଚକଟି କେଉଁ ଏକ ଅସନ୍ତୋଷିଆ, ହେଲେ ବାସ୍ତବ ପରିଣତିରେ ପହୁଞ୍ଚାଇ ଦେଇପାରେ । ଅପରପକ୍ଷେ ବ୍ୟକ୍ତି ଚେତନାର ଓଢଣା ଟାଣି ବସିଥିବା ମଣିଷ ଯେତେ ବାହାରକୁ ଅନେଇଲେ ମଧ୍ୟ "ସମାଜ" ର ଦୁଃଖ ଦୁର୍ଦ୍ଦଶାକୁ ଦେଖି ନ ଦେଖି ପାରିବା ବିଚିତ୍ର ନୁହେଁ । ଦ୍ୱିତୀୟରେ ସମାଜର ଅର୍ଥ ହେଲା ନିଜ ଠାରୁ ଭିନ୍ନ ଅପର ଲୋକମାନଙ୍କର ସଂସାର, ବୃତ୍ତ ପରେ ବୃତ୍ତ, ଯାହା ତୁମକୁ ଘେରି କରି ରହିଛି, ତୁମେ ଗ୍ଚହଁ କି ନ ଗ୍ଚହଁ । ଯେଉଁ ଚରିତ୍ର ତା'ର ନିକଟତର ବୃତ୍ତ (ପରିବାର, ଜାତି ଗୋଷ୍ଠୀ, ସହକର୍ମୀ) ର ପ୍ରଭାବକୁ ଠଉରେଇ ପାରିଛି, ହେଲେ ସୁଦୂର ବୃତ୍ତ (ଶ୍ରେଣୀ, ଦେଶ, ମାନବସମାଜ)ର ପରିଧିକୁ ଛୁଇଁ ପାରି ନାହିଁ, ତା'ର ସମାଜ ଚେତନା ଦୁର୍ବଳ ବୋଲି କହିବା ସମିଚୀନ ହେବ କି ? ମୋ ମତରେ ଗୁଣାତ୍ମକ ଦୃଷ୍ଟିରୁ ଦୂର ନିକଟରେ ଯାଏ ଆସେ ନାହିଁ । ଅସଲ କଥା ହେଉଛି ଯେ ଚରିତ୍ର ତା'ର ସମାଜଚେତନା ଅର୍ଥାତ୍ ତା'ର "ଅପର" ସହିତ ସମ୍ପର୍କକୁ କେତେଦୂର ଅଙ୍ଗେ ଲିଭେଇଲା ପରି ଆବେଗ, ଆନନ୍ଦ, ଦୁଃଖ, ଚିନ୍ତା ତଥା ନୈସର୍ଗିକ ଅପୂର୍ଣ୍ଣତାରେ ସମୃଦ୍ଧ କରି ପାରିଛି । ଲେଖକ ତା'ରି ଉପରେ ମନଧ୍ୟାନ ଦେଉ । କେଉଁ ବୃତ୍ତ ଯାଏଁ ତା'ର ପହୁଞ୍ଚ, ତାହା ତା'ର ଜନ୍ମଜୀବିକା, ପ୍ରବୃତ୍ତି, ପରିସ୍ଥିତି, ଇତ୍ୟାଦି ଅନେକ ବିଷୟ ଉପରେ ନିର୍ଭର କରେ । ସେହି ଅନୁପାତରେ ତା'ର ଲେଖକପଣିଆ "ଭଲ" ଦେଖାଯିବ କି ନାହିଁ, ଦେଖିଲା ବେଳେ ଏଭଳି ବିଗ୍ଚର ତା' ମନକୁ ନ ଆସୁ, ଏବଂ ଚରିତ୍ରକୁ ତା'ର ଶାସ୍ତି (ଅବାସ୍ତବତା) ଭୋଗିବାକୁ ନ ପଡୁ ।

ତୃତୀୟ ଏବଂ ମୋ ମତରେ ସବୁଠାରୁ ଜଟିଳ ଓ ବିବାଦମୂଳକ ପ୍ରଶ୍ନ ହେଲା ଯେ ଲେଖକ କ'ଣ ଖାଲି ତା' ଚରିତ୍ର ସହିତ ଅଙ୍ଗୀଭୂତ ହୋଇ ଥେଇ ଥେଇ ହେବ ମଞ୍ଚରେ ଅଭିନୟ କଲାପରି, ନା ସେ ତା'ର ଚରିତ୍ର ମାଧ୍ୟମରେ କିଛି କହିବ ତା' ନିଜ କଥା ? ଆପଣା ଆତ୍ମଦର୍ଶନ ସମାଜ ଦର୍ଶନ ଇତ୍ୟାଦିର ସାରକଥା ଯାହା ସେ ସିଧାସଳଖ କହିବାକୁ ଗ୍ଚହେଁ ନାହିଁ ? ଏହି ପ୍ରଶ୍ନ ଶୁଣିଲାକ୍ଷଣି ଜଣେ ଜଣେ ଲେଖକ ରାଗିଯାଇ ପାରନ୍ତି । କହିପାରନ୍ତି—କ'ଣ ହେଲା ? ଆମେ ଗ୍ରୀକ୍‌ଙ୍କ ପରି ଚରିତ୍ରରୂପୀ "ଟ୍ରୋଜାନ୍ ଘୋଡ଼ା" ଭିତରେ ପଶି ଯିବୁ କେଉଁ ଗଡ଼ ଜିଣିବା ପାଇଁ ? ଆମ ନିଜର ଆତ୍ମସମ୍ମାନ ନାହିଁ ? କିନ୍ତୁ କେତେକ ସ୍ରଷ୍ଟାମନ୍ୟ ଲେଖକ କହିବେ—କିଓ ? ଚରିତ୍ରଟି କିଏ ? ସେ କ'ଣ ଆମରି ପୁତ୍ତଳିକା ନୁହେଁ ? ଆମରି ମନଗଢା ଜୀବ ଯେ

ଆମରି ଆନନ୍ଦ ତଥା ଉଦ୍ଦେଶ୍ୟର ପୂର୍ତ୍ତି ପାଇଁ ଜନ୍ମ ହୋଇଛି, ଆମରି ପାଇଁ କଥା କହିବ, କାମ କରିବ ଓ ମରିବ ? ଜର୍ଜ ବର୍ଣ୍ଣାଡ୍ ଶା'ଙ୍କ ଚରିତ୍ରମାନେ ଯଦି ପୂରାପୂରି ତାଙ୍କ ସ୍ୱତନ୍ତ୍ର ଜୀବନଦର୍ଶନର ମୁଖପାତ୍ର ହୋଇ ମଧ୍ୟ ବୁଦ୍ଧିବାଦୀ ପାଠକର ପ୍ରିୟ ହୋଇ ପାରନ୍ତି, ଆମର ଆଜ୍ଞାଧୀନ ଚରିତ୍ରକୁ ଅବାସ୍ତବ ବୋଲି କେହି ପଗ୍ଭରିବେ ନାହିଁ, ଏଭଳି ଆଶଙ୍କା ଅମୂଳକ ନୁହେଁ କି ? ଇତ୍ୟାଦି । ବିଜ୍ଞ ସମାଲୋଚକମାନଙ୍କ ମହଲରେ ଏହି ଲେଖକୀୟ ବାଣୀ (authorial voice) ର ଉପଯୋଗିତା ସମ୍ପର୍କରେ ଆଲୋଚନା ଗଡ଼ି ଆସିଛି ଅନେକ ଦିନୁ । ଗୋଟିଏ ପକ୍ଷରେ ଶ' ରହିଲେ ବେଳକୁ ଅପରପକ୍ଷରେ ସେକ୍ସପିଅରଙ୍କ ଆଦର୍ଶ । ଉଭୟେ ମୋର ନମସ୍ୟ । ତେବେ ମୋତେ ଚେତାଇ ଦେବାକୁ ପଡ଼ିବ ଯେ ଶ'ଙ୍କର ନାଟକ ଗୁଡ଼ିକ "play of ideas" ତଥ୍ୟଧର୍ମୀ ଖେଳ ହିସାବରେ ଧରି ନିଆଯାଇଛି । ତେଣୁ ତାଙ୍କର ଚରିତ୍ର ମାନେ ବାସ୍ତବ ନ ହେଲେ ମଧ୍ୟ ବୁଦ୍ଧିବାଦୀ ପାଠକ ସମାଜର ଏକ ବିଶିଷ୍ଟ ସ୍ଥାନ ପାଇ ପାରିଛନ୍ତି । କିନ୍ତୁ ତାହା ବାର୍ତ୍ତାବହର ସମ୍ମାନ । ତୁମେ କ'ଣ ତୁମର ବାର୍ତ୍ତାରେ ଏହି ପ୍ରକାର ଚମକ ଏବଂ ନୂତନତ୍ୱ ଆଣିଦେଇ ପାରିବ, ଯେଉଁଥିରେ ତୁମ ମୁଖପାତ୍ର-ମାନେ ସୂର୍ଯ୍ୟଙ୍କର ଚନ୍ଦ୍ର ପରି ସମ୍ମାନ ପାଇ ପାରିବେ ? ତା'ଛଡ଼ା ଶ' ନିଜେ ତାଙ୍କ ଉଦ୍ଦେଶ୍ୟର ଇସ୍ତାହାର ଦେବାକୁ କୁଣ୍ଠାବୋଧ କରି ନାହାନ୍ତି । ଯାହାର ଅର୍ଥ ଏଇ ଯେ ମୋର ଚରିତ୍ରମାନେ ସତ ବୋଲି ମନେ ନ ହେଲେ ଯାଏଆସେ ନାହିଁ; ତାଙ୍କ ମୁହଁରେ ମୁଁ ଯାହା କହୁଛି ତୁମକୁ, ବଦାନୁବାଦର ଦ୍ୱନ୍ଦ୍ୱର ସୃଷ୍ଟି କରି ଗୋଟାଏ ଚମତ୍କାର ତଥ୍ୟ ବଢ଼େଇ ଦେଉଛି ତୁମ ହାତକୁ, ତା'କୁଇ ବୁଝିଲେ ଯଥେଷ୍ଟ ।

ନା, ଶା'ଙ୍କ କଥା ଛାଡ଼ିଦିଅ । ଉଦାହରଣସ୍ୱରୂପ ତାଙ୍କୁ ଗ୍ରହଣ କଲେ ଅସୁବିଧାରେ ପଡ଼ିବ । ତାତ୍ତ୍ୱିକ କନ୍ଦଳ ଭିତରକୁ ନ ଯାଇ ମୁଁ ମୋ କ୍ଷୁଦ୍ର ବୁଦ୍ଧିରେ ମାତ୍ର ଏତିକି କହିବାକୁ ଗ୍ଭହେଁ—ଯାହାଙ୍କୁ ଏତେ କଷ୍ଟକରି ଚିହ୍ନିଛ, ଚିହ୍ନେଇଛ, ଏବଂ ଗଢିବାରେ ଲାଗିଛ, ଏମାନେ ମିଛ ନୁହେଁ ସତ ବୋଲି କହି ହେଉଛ, ଜାଣିଶୁଣି ତାଙ୍କ ପଛରେ ଠିଆହୋଇ କ'ଣ ଘୋଷଣା କରିବା ଉଚିତ ଯେ ସେମାନେ ଯେତେ ହେଲେ ତୁମରି "ସତ" ? ଯନ୍ତ୍ରଗ୍ଭଳିତ ? ଜଣାଶୁଣା କଥା ଯେ ତୁମେ ତାଙ୍କ ପିତା-ମାତା ଭାଗ୍ୟବିଧାତା, ଯେ ଲେଖକ ହେବା ଛଡ଼ା ତୁମେ ନିଜେ ଜଣେ ଜୀବନ୍ତ ସଚେତନ ମଣିଷ ଏବଂ ନାନା ବିଷୟରେ ତୁମର ମତାମତ, ଆଦର୍ଶ ଏବଂ ଆଭିମୁଖ୍ୟ ରହିବା ଅନିବାର୍ଯ୍ୟ, ଯାହା ଆପେ ଆପେ ତୁମ ଲେଖାରେ ଫୁଟି ଉଠିବ । କିନ୍ତୁ ସେହି ଉନ୍ମୋଚନ ଅନବଗୁଣ୍ଠନର ମଜା ଓ ବାହାଦୂରୀ ସୁଧୀ ସମାଲୋଚକମାନଙ୍କ

"ଆବିଷ୍କାର" ଉପରେ ଛାଡ଼ିଦେଲେ ଭଲହେବ ନାହିଁକି ? ହଁ, ଛଳରେ କହିପାର ସେମିତି, ସିଏ ବି ଗୋଟାଏ କାରସାଦି, ଯାହା ମୁଁ ସୁଖପାଠର ପରିପ୍ରେକ୍ଷୀରେ କହିଛି ଏଥିପୂର୍ବରୁ । ଅନ୍ୟଥା ନୁହେଁ । ବିଚଗ ଚରିତ୍ରକୁ ଧଗ ପକେଇ ଦିଅ ନାହିଁ- ତା'ର ବି ଗୋଟାଏ ଆତ୍ମ ସମ୍ମାନ ଅଛି !

ଚରିତ୍ର ନିର୍ମାଣ ନେଇ କେତୋଟି ତାତ୍ତ୍ୱିକ ଆଲୋଚନା ପରେ ଅଳ୍ପ କେତେକ କାର୍ଯ୍ୟକାରୀ ସାନକଥା କହି ଆଜିକାର ବକ୍ତବ୍ୟ ଶେଷ କରିବ । ଯାକୁ ମଧ୍ୟ ପ୍ରଶ୍ନର ଉତ୍ତର ହିସାବରେ କୁହାଯାଉ ।

ପ୍ରଶ୍ନ- ଲେଖକ ତା'ର ଗୋଟିଏ ଗଳ୍ପରେ ଥିବା ପ୍ରତ୍ୟେକ ଚରିତ୍ରକୁ କ'ଣ ସମାନଭବରେ ଭଲପାଇବାକୁ ବାଧ୍ୟ ?

ଉତ୍ତର—ପ୍ରତ୍ୟେକଙ୍କୁ ତୁମେ ଗଢିଛ, ତେଣୁ ପ୍ରତ୍ୟେକେ ତୁମର ପ୍ରିୟ ହେବେ ନାହିଁ କେମିତି ? କିନ୍ତୁ ସମସ୍ତଙ୍କୁ ଏମାନ ଅଧିକାର ଦିଆଯାଇ ନ ପାରେ । କ୍ଷୁଦ୍ର ଗଳ୍ପରେ ସର୍ବଥା ମନେରଖିବା ଉଚିତ ଯେ କେବଳ ଜଣେ, ହୁଏତ ଦୁଇଜଣ ମୁଖ୍ୟ ଚରିତ୍ର ରହିଲେ ପାଠକର ଜ୍ଞାନାଲୋକ ବିଚ୍ଛୁରିତ ହେବ ନାହିଁ, ଏବଂ ତୁମ "ଶେଷକଥାର ଜାଗୃତି" ସଫଳ ନ ହେବାର ଆଶଙ୍କା ନାହିଁ । ଏହାର ଅର୍ଥ ନୁହେଁ ଯେ ବହୁଚରିତ୍ର- ବିଶିଷ୍ଟ ଗଳ୍ପ(ମୁଖ୍ୟ ବୋଲି କେହି ନାହିଁ)ସମ୍ଭବ ନୁହେଁ । ଗୋଟି ଗୋଟି ପାଖୁଡ଼ା ଖୋଲି ଦେଇ କେଉଁ ଏକ ସମାହାରର ସୌନ୍ଦର୍ଯ୍ୟକୁ ଫୁଟାଇବା ପାଇଁ କିଏ ମନା କରୁଛି ? ଯଥା ଗୋଟିଏ କବି ସମ୍ମିଳନୀ, ରେଲ୍‌ୱେ ପ୍ଲାଟ୍‌ଫର୍ମ, କଲେଜ୍ କମନ୍ ରୁମ୍ ଇତ୍ୟାଦି, ଯେଉଁଠି ଅନେକଙ୍କୁ ନେଇ ଗୋଟିଏ ଫୁଲର ରଙ୍ଗ, ଗୋଟିଏ ଫୁଲର ବାସ୍ନା; ବସ୍ତୁତଃ ଚରିତ୍ର ବୋଲି ଗୋଟିଏ । କିନ୍ତୁ ସାଧାରଣତଃ ଗୋଟିଏ ଗଳ୍ପରେ ଏକାଧିକ ଚରିତ୍ର ରହିଲେ ମଧ୍ୟ ପ୍ରାଧାନ୍ୟ ଦିଅ ତୁମ ଗଜକୁମାରକୁ ଅବା ଜେମାଦେଇଙ୍କୁ, ଅବା ଦୁହିଁଙ୍କୁ । ମାଲୁଣୀଟି ଯେତେ ସୁନ୍ଦର, ଯେତେ ଛଇଳି ହେଲେ ମଧ୍ୟ ତା'ର ରୂପ ଗୁଣକୁ ଲମ୍ବେଇ ଦିଅ ନାହିଁ, ତା'ରି ପାଖରେ ଅଟକି ଯାଅ ନାହିଁ । ତା'ହେଲେ ତୁମ "ଗଜକୀୟ" ଗଳ୍ପର ମର୍ଯ୍ୟାଦା କ୍ଷୁର୍ଣ୍ଣ ହେବ ।

ପ୍ରଶ୍ନ—ଲେଖକ ନିଜେ ତା' ଗପରେ ଚରିତ୍ରଟିଏ ହୋଇ ବସିଲେ କିଛି କ୍ଷତି ଅଛି କି ?

ଉତ୍ତର—କିଛି କ୍ଷତି ନାହିଁ । ବରଂ ସେଥିରେ ଅନ୍ତରଂଗତାର ସ୍ୱାଦୁ ମିଳିବ, ଯାହା ମିଛର ସତକୁ ଦର୍ଶାଇବାର ଆଉ ଗୋଟିଏ କାରସାଦି । ମୁଁ ଏକଥା ପୂର୍ବରୁ କହିଛି ଅନ୍ୟ ଏକ ପ୍ରସଙ୍ଗରେ । କିନ୍ତୁ ଅସୁବିଧା ହେଉଛି ଯେ ସୂତ୍ରଧର ଭବରେ ହେଉ

କି ମୁଖ୍ୟଚରିତ୍ର ଭାବରେ ହେଉ, ତୁମେ ନିଜେ ତୁମ ଗଳ୍ପ ଭିତରକୁ ପଶିଲେ, ତୁମର ସର୍ବଜ୍ଞପଣିଆ କ୍ଷୁଣ୍ଣ ହୋଇଯିବ । ତେଣୁ ଏ ବିଷୟରେ ବୁଝିବିଚାରି ଗଳ୍ପଉପଯୋଗୀ ଉଚିତ ପନ୍ଥା ଗ୍ରହଣ କରିବାକୁ ହେବ ।

ପ୍ରଶ୍ନ—ଫ୍ୟାଣ୍ଟାସି ଜରିଆରେ ଅବାସ୍ତବ ଚରିତ୍ରକୁ, ହୁଏତ ନିର୍ଜୀବ ପାହାଡ଼ ପର୍ବତକୁ ମଧ୍ୟ ଥାପନା କରିହେବ, ବାସ୍ତବର ନିଗୂଢ଼ ଅବା ପ୍ରଚ୍ଛନ୍ନ ରୂପ ଦେଖାଇବା ପାଇଁ । କିନ୍ତୁ ଗୋଟିଏ ଗଳ୍ପରେ ଫ୍ୟାଣ୍ଟାସିର ରୂପକଧର୍ମୀ ବାସ୍ତବ ଓ ପ୍ରତ୍ୟକ୍ଷତାର ବାସ୍ତବତାକୁ ମିଶେଇ ଦେଇ ହେବ କି ?

ଉତ୍ତର—ନିଶ୍ଚୟ । ଅତ୍ୟାଧୁନିକ ଅନେକ ଗଳ୍ପରେ ଏହିପ୍ରକାର ଏକ୍‌ସପେରିମେଣ୍ଟ୍ କରାଯାଇଛି । ମୁଁ ମଧ୍ୟ ଏହି ପ୍ରଲୋଭନର ଫାନ୍ଦରେ ପଡ଼ିଛି ମୋର କେତୋଟି ଗଳ୍ପରେ । ଏବଂ ମୁଁ ଦୁଃଖିତ ନୁହେଁ । କିନ୍ତୁ ଏଠି ଫ୍ୟାଣ୍ଟାସି ସୁରୁ ହେଉ ବାସ୍ତବରୁ । ଉତ୍ତରଣର ଘାଟି (Point of departure) ହେଉ ବାସ୍ତବ ଚରିତ୍ରର କେଉଁ ଏକ ଅନୁଭୂତିର ମୁହୂର୍ତ୍ତ । ଯେପରିକି ମନେହେବ ଯେ ସେ ବାସ୍ତବରୁ ଉଠିଗଲା ଅତି-ବାସ୍ତବକୁ । ସେଇ ତା'ର ଅତିଶୟ ଅନୁଭବର କ୍ରମଶଃ, ସ୍ୱପ୍ନ ଅବା ଦୁଃସ୍ୱପ୍ନରୁ ବଳି କେଉଁ ଏକ ଅଲୌକିକତା ଯେଉଁଥିରେ ସେ ତା'ର ଅବଚେତନ—ଅତିଚେତନକୁ ଛୁଇଁ ପାରୁଛି । ଏବଂ ପାଠକକୁ ମଧ୍ୟ ଏକ ଅଚିନ୍ତ୍ୟ ସମ୍ଭବନାର ସ୍ୱାଦୁ ଆଣିଦେଇ ପାରୁଛି । ତେବେ ଗୋଟିଏ ଚେତାବନୀ ଦେବାକୁ ଯାଉଛି । ତୁମର ଗପଟି ଏମିତି ହୋଇଥିବା ଦରକାର ଯେ ଗଂଗା ଓ ଯମୁନାର ରଂଗ ଭିନ୍ନହୋଇ ଦିଶିବ, ଏବଂ ତୁମ ଉଚ୍ଚାଭିଳାଷର ମହତ୍ୱକୁ ବୁଝିହେବ । ଏବଂ ପାଠକ ଭାବିବ ନାହିଁ ଯେ ବିଚରା ଅନଭିଜ୍ଞ ଲେଖକ ବାସ୍ତବକୁ ସମ୍ଭାଳି ନ ପାରି ମାଡ଼ିଗଲା କେଉଁ ଜଙ୍ଗଲକୁ !

ଆହୁରି ଏମିତି କେତେ ପ୍ରଶ୍ନ ଉଠିପାରେ ଚରିତ୍ରମାନଙ୍କୁ ନେଇ । କିନ୍ତୁ ସେଥିପାଇଁ ସମୟ ନାହିଁ । ତେବେ ମୋର ବିଶ୍ୱାସ ଯେ ସେଗୁଡ଼ିକ ଅପେକ୍ଷାକୃତ ଗୌଣ ଓ ତୁମେ ନିଜେ ତା'ର ସମାଧାନ କରି ପାରିବ ।

ଶେଷକୁ ରହିଲା ଚରିତ୍ରକୁ ବିଦାୟ ଦେବାର ପାଳି । ମୋର ମନେହେଉଛି ଯେ ମୁଖ୍ୟଚରିତ୍ରକୁ ବିଦାୟ ଦେବା ଓ ପ୍ଲଟର ମୁଣ୍ଡି ମାରିବା ପ୍ରାୟ ଏକାକଥା । ତେଣୁ ଆଗାମୀ କିସ୍ତିମାନଙ୍କରେ ପ୍ଲଟ୍ ବିଷୟରେ ଆଲୋଚନା କଲାବେଳେ ତା'ର ବିଧିବିଧାନ ଶୁଣାଇଲେ ଭଲହେବ ବୋଲି ମୋର ମନେହେଉଛି ।

ମିଛ ଅବା ସତ-ମିଛର କାହାଣୀକୁ "ସମ୍ପୂର୍ଣ୍ଣ ସତ" ବୋଲି ଦେଖାଇବା ଦିଗରେ ଚରିତ୍ରର ଭୂମିକା ତାହାହେଲେ ଥାଉ ଏତିକିରେ । ଏଣିକି ଯିବା କାହାଣୀର ଅନ୍ୟାନ୍ୟ ବିଭାଗ ଏବଂ ଉପାଦାନର ମାନମର୍ଯ୍ୟାଦା ବୁଝିବା ପାଇଁ ।

—୦—

( ୯ )

(୨) ପ୍ଲଟ : "ମିଛ ଅବା ସତ-ମିଛର କାହାଣୀ ସଂପୂର୍ଣ୍ଣ ସତବୋଲି ମନେ-ହେବ," ଏଥିପାଇଁ ପ୍ଲଟ, ଅର୍ଥାତ୍ ଘଟଣା-ଚରିତ୍ର-ପରିବେଶର ସଂଯୋଜନାକୁ ଯଥାସମ୍ଭବ ବିଶ୍ୱସନୀୟ କରିବାକୁ ପଡ଼ିବ, ଏହାର ବ୍ୟାଖ୍ୟା ଅନାବଶ୍ୟକ । ତୃତୀୟ ଏବଂ ଚତୁର୍ଥ କିସ୍ତିରେ ମୁଁ ଗପଲେଖା ପୂର୍ବରୁ ଛବି ନେଇଥିବା ପ୍ଲଟ୍, ଅର୍ଥାତ୍ ନକ୍ସା (design)ର ଅବତାରଣା କରିଛି । ଗପଲେଖା'ବେଳେ ସେହି ନକ୍ସାକୁ ପରିପୁଷ୍ଟ କରିବାର ଦାୟିତ୍ୱ ହେଲା ସଂଯୋଜନା । ତା'ରି ବିଷୟରେ ଆଲୋଚନା କରିବା ଏବଂ ଦେଖିବା ତା'ରି ଦ୍ୱାରା କିପରି ଉପରୋକ୍ତ ଉକ୍ତିର ସାର୍ଥକତା ଆଣିଦେଇ ହେବ ।

ମୋର ପ୍ରଥମ ନିବେଦନ ଯେ ଲେଖୁ ଲେଖୁ ନକ୍ସାର ଗଢ଼ଣରୁ ଖସିଯାଅ ନାହିଁ । ଏବଂ ଗଢ଼ଣର ମୂଳକଥା ହେଲା ଗୋଲେଇ । ଏହାର ଆବଶ୍ୟକତା ବିଷୟରେ ମୁଁ ପୂର୍ବରୁ କହିଛି । ଇଏ ହେଲା ସବୁପ୍ରକାରର ଗଳ୍ପ ପାଇଁ ଉପଯୋଗୀ ଏକ ବ୍ୟାପକ ଏବଂ ସାର୍ବଜନୀନ ଫର୍ମାର ସୁପାରିଶ । ଫର୍ମା (structure) ଠାରୁ କଥାସାର (substance)ବଡ଼କଥା, ଏ ବିଷୟରେ ତର୍କକରି ଲାଭ ନାହିଁ । ପାଠକର ଚେତ-ନାରେ କେଉଁ ଏକ ଗଭୀର ଉପଲବ୍ଧିର ଛାଇ ପଡ଼ିଲା ମାତ୍ରେ ସେ ଲେଖକର ଯେତେକ "ଅବାଗିଆ ପଣ"କୁ କ୍ଷମାକରି ଦେଇ ପାରିବ ଏଥିରେ ସଂଦେହ ନାହିଁ । କିନ୍ତୁ ମୋର ଏ ପାଠ କେବଳ ଛାତ୍ରମାନଙ୍କ ପାଇଁ, ଜିନିୟସ୍ ଅବା ପରିଣତ ଲେଖକମାନଙ୍କ ପାଇଁ ନୁହେଁ । ତେଣୁ ଗୋଲେଇର ପରଂପରାକୁ ମୁଁ ତା'ର ଆପଣା ସିଂହାସନରେ ବସେଇ ରଖିବାକୁ ଚାହେଁ । ତୁମେ ତାକୁ ଗାଦିଚ୍ୟୁତ କରିବ କି ନାହିଁ, ଏବଂ ସେଥି-ପାଇଁ କେତେଦୂର ଶକ୍ତିଅଛି ତୁମ ହାତରେ, ତା' ତୁମେ ଜାଣିଥିବ ।

ମୁଁ ଅବଶ୍ୟ କହିଛି ଯେ ପ୍ଲଟ, ଏବଂ ବିଶେଷତଃ ତା'ର ଗୋଲେଇ ହେଉଛି ଗୋଟିଏ ଆରୋପିତ କୃତ୍ରିମତା । କିନ୍ତୁ ମଜାକଥା ହେଉଛି ଯେ ଏଇ ଗୋଲେଇଟି ନ ଥିଲେ ସୁଦ୍ଧା ପାଠକ ବାସ୍ତବକୁ ସତବୋଲି ସ୍ୱୀକାର କରିପାରେ ନାହିଁ । ତା'ର କାରଣ, ଗୋଲେଇ ସାଂଗରେ ତା'ର "ସମ୍ପୂର୍ଣ୍ଣ ସତ"ର ଅଭୀପ୍ସା ଜଡ଼ିତ ହୋଇ ରହିଛି । ବିଚରା ତା'ର ଦୈନନ୍ଦିନ ଅନୁଭୂତିକୁ ଅତିକ୍ରମ କରିବା ପାଇଁ ହାଇଁପାଇଁ ହେଉଥାଏ

ଯାବୁବେଳେ । ନିଜଗଢ଼ା ଅଥଚ ଅନିର୍ଦ୍ଦିଷ୍ଟ ନାନା ସମ୍ଭବିତ ଏବଂ ସମ୍ପୂର୍ଣ୍ଣ ସତକୁ ଖୋଜି ବୁଲୁଥାଏ । ଲେଖକ ତ ଆଧ୍ୟାତ୍ମିକ ଗୁରୁ ନୁହେଁ ଯେ ତାକୁ ହାତଧରି ନେଇଯାଇ ପାରିବ କେଉଁ ଊର୍ଦ୍ଧ୍ୱକୁ । କିନ୍ତୁ ସେ ଅନ୍ତତଃ ତା ହାଇଁପାଇଁକୁ ଯୋଡ଼ିଯାଡ଼ି ଗୋଲେଇ-ଟିଏ ତିଆରି କରି ଦେଇ ପାରିବ, ଆଜିକ ପାଇଁ, ମାନେ ଗପଟିକୁ ପଢିସାରି ସୁଖୀ ହେବାର କ୍ଷଣିକ ଅନୁଭବରେ । ଯେମିତି ସେ ମନେକରିବ ଯେ ହଁ, କଥାଟା ଛିଣ୍ଡିଗଲ ଯାହାହେଉ; ମୋତେ ଭଲଲାଗୁଛି । ତେଣୁ ତା'ର ଏଇ ହାଇଁପାଇଁକୁ ବିଦ୍ରୂପ କଲ ପରି କିମ୍ବା ଅନ୍ୟମନସ୍କ ହୋଇ ନକ୍ସାର ଗଢଣକୁ ଦିଗନ୍ତବିସ୍ତାରୀ ନାକସିଧା, ଦିଗହଜା ଗୋଲକଧନ୍ଦା, ଇତ୍ୟାଦିର ପ୍ରାୟ ବିରୂପ କରି ଥୋଇଲେ ସେ ରାଗିବ ନାହିଁ ତୁମ ଉପରେ ? ହୁଏତ ଉପନ୍ୟାସ ହୋଇଥିଲେ ସେ ତା'ର ବିସ୍ତାର ଭିତରୁ ଗୋଲେଇଟିଏ ଉଦ୍ଧାର କରି ପାରନ୍ତା ନିଜପାଇଁ । କିନ୍ତୁ ଗପରେ ସେ ସୁବିଧା କାହିଁ ? ତେଣୁ ସେ ସନ୍ତୁଷ୍ଟ ନ ହୋଇ ପାରି କୁହେ ଯେ ଗପଟା ଅବାଗିଆ, ତା'ର ମୁଣ୍ଡଗଣ୍ଡି ନାହିଁ, ଇତ୍ୟାଦି । ବାଜେକଥା ଅର୍ଥାତ୍ ମିଛ ବୋଲି ମଧ୍ୟ କୁହେ ! ହୋଇ-ପାରେ ଯେ ତା'ର ଏଭଳି କହିବା ଅନ୍ୟାୟ, କିନ୍ତୁ ଉପାୟ କଅଣ ? କହିବାକୁ ଗଲେ ତୁମେ ହିଁ କ'ଣ ଜଣେ ପାଠକ ନୁହଁ, ନା' ତୁମର ସେଭଳି ହାଇଁପାଇଁ ନାହିଁ ?

ଗୋଲେଇରେ ରହିଛି ଖିଅ ଯୋଡ଼ିବାର ଶେଷକଥା, କ୍ଲାଇମାକ୍ସ୍ । ତେଣୁ ଗପ ପଢ଼ା ସରିଲେ ଯାଇଁ ଲେଖକ ତା'କୁ ଚିହ୍ନେ ଏବଂ ଖୁସିଟାଏ ହୁଏ । ପୂର୍ଣ୍ଣଶଶୀକୁ ଦେଖିଲପରି । କିନ୍ତୁ ଲେଖକ କ'ଣ ସହଜେ ଜହ୍ନର ସ୍ୱରୂପକୁ ଚିହ୍ନେଇ ଦେବ ନା ଚିହ୍ନେଇବା ଉଚିତ ? ନା । ତା' ପୂର୍ବରୁ ସେ ପାଠକକୁ "ଠେକୁଆ"ର ଛାଇଛବି ଦେଖେଇବ, ଭୁଲେଇବ, କହିବ—ଦେଖିଲୁ ଇଏ କ'ଣ ? ବ୍ୟସ୍ତ ଲାଗୁଛି, ନୁହେଁ ? ଅର୍ଥାତ୍ ଯାତ୍ରାପଥରେ କିଛି କନ୍ଦଳ, କିଛି ପାହାଡ଼, କିଛି ପାତାଳ, କିଛି ମିଛ ଗୋଲେଇ ନ ରହିଲେ ଶେଷକଥାର ସମ୍ୟକ୍ ସୁଖ ଆସିବ ନାହିଁ । ଏଇଠି ପ୍ରଶ୍ନ ଉଠିପାରେ ଯେ ବାଟରେ କେଇଟା ଠେକୁଆ ରହିଲେ ଭଲହେବ ? କ୍ଷୁଦ୍ର ଗଳ୍ପରେ ଏକାଧିକ କ୍ଲାଇ-ମାକ୍ସର ଅବକାଶ ନାହିଁ ସିନା, ଏକାଧିକ "ଠେକୁଆ" ରହିଲେ କିଛି କ୍ଷତି ଅଛି କି ?

ମୋ ମତରେ ଏକରୁ ଅଧିକରେ ବାଧା ନାହିଁ । ପାଠକକୁ ଥରେ ଠକେଇଲେ ହେଲା, ଏଭଳି ପ୍ରତିବାଦର ମୂଲ୍ୟ ନାହିଁ । ସାଧାରଣତଃ ଠକେଇବାର ଉତ୍କର୍ଷ ଉପରେ ହିଁ କ୍ଲାଇମାକସ୍‌ର ସଫଳତା ନିର୍ଭର କରେ । ଠକେଇବାରେ ଯଥେଷ୍ଟ ଜୋର୍ ନ ଥିଲେ ଶେଷକୁ ଆଖି ଖୋଲିବ ସିନା, "ଚମକି ଚେଇଁ" ଉଠିବାର ବିସ୍ମୟ ତଥା ଆନନ୍ଦ ଆସିବ ନାହିଁ । ତେବେ ମୁଁ କେବଳ ଏତିକି କହିବାକୁ ଚାହେଁ ଯେ ଚଗଲା ଠେକୁଆମାନଙ୍କୁ

ଆୟତ୍ତରେ ରଖ । ପାହାଡ଼-ପାତାଳ ଆସୁ, ହୁଏତ ଗୋଟିକରୁ ବେଶି, କିନ୍ତୁ ଛନ୍ଦଭୁଇଁକୁ ଦନ୍ତୁରିତ କରିଦିଅ ନାହିଁ । ଏକାଧିକ ମିଛ ଗୋଳେଇବୁ ମନା ନାହିଁ, କିନ୍ତୁ ଚକା ଚକା ଭଉଁରୀ ନ ଖେଳିଲେ ଭଲ । ଦେଖ ଯେମିତି ପାଠକ ହାଲିଆ ହୋଇ ନ ଯାଏ । ଏମିତି ହାଲିଆ ନ ହେଉ ଯେ ସେ ଶେଷକଥାରେ ବିସ୍ମୟକୁ ଆଦରି ନେଇ ପାରିବ ନାହିଁ, ଭାବିବ ଯେ ଇଏ ମଧ୍ୟ ଠକେଇବାର କ୍ରମବିଶେଷ । ଲେଖକଟାକୁ ବିଶ୍ୱାସ ନାହିଁ ।

କଥାରେ କୁହନ୍ତି ଯେ ଯଥାର୍ଥ ବ୍ୟତିକ୍ରମ ହିଁ ସାର୍ବଜନୀନ କ୍ରମର ପରିଚାୟକ । ପାଶ୍ଚାତ୍ୟ କଥା ସାହିତ୍ୟର ପୁରୋଧା ମୋପାସାଁ ଓ ହେନ୍‌ରୀ, ସମର୍‌ସେଟ୍ ମମ୍ ଓଗେର ପାଠକକୁ ଏହି ପ୍ରକାରର ଠକେଇ ଆସିଛନ୍ତି; ତା'କୁ ଶେଷରେ ଦସ୍ତୁରମତ ଚମକେଇବେ ବୋଲି । ଏବଂ ଆମେ ସମସ୍ତେ ଅଳ୍ପବହୁତ ସେଇ କାରସାଦି ନକଲ କରି ଆସିଛୁ । କିନ୍ତୁ ଜଣେ ଅଧେ ଲେଖକ ପ୍ରମାଣ କରି ଦେଇ ପାରିଛନ୍ତି ଯେ ଉନ୍ମୋଚନ (revelation)ରେ ଶେଷ ବିସ୍ମୟ ଲୋଡ଼ା ନାହିଁ,ଉନ୍ମୋଚନର ପ୍ରକ୍ରିୟା(unfolding)କୁ ଉତ୍ତମରୂପେ ଲହଡେଇ ପାରିଲେ ସେଇ ଲକ୍ଷେ ଟଙ୍କା । ସେଥିରେ ପାଠକ ସନ୍ତୁଷ୍ଟ ନ ହେବାର କୌଣସି କାରଣ ନାହିଁ । ଏଥିର ଗୋଟିଏ ବିଶିଷ୍ଟ ଉଦାହରଣ ମନେ-ପଡୁଛି । ଆର୍ଥର୍ କୋଏସ୍‌ଲର୍(Arthur Koestler)ଙ୍କ ସୁପରିଚିତ ଗଳ୍ପ "ମଧ୍ୟାହ୍ନରେ ଅନ୍ଧକାର (Darkness At Noon)" ।

ଏଇ ଗପରେ ଲେଖକ ମୂଳରୁ କହୁଛନ୍ତି,—"ତାହାହେଲେ ସବୁ ଶେଷ ଏଇ-କ୍ଷଣି । ରୁବାଶୋଭ୍ ଜାଣିଥିଲା ଯେ ଅଧଘଡି ପୂର୍ବରୁ ତା'ର ଅସ୍ତିତ୍ୱ ରହିବ ନାହିଁ ।" ଏବଂ ସେଇଆ ହେଲା । କୌଣସି ଚମକପ୍ରଦ ଘଟଣା ଘଟିଲା ନାହିଁ, କୌଣସି ନୂତନ ଜ୍ୟୋତିଷ୍କ ଦେଖାଦେଲା ନାହିଁ ଆକାଶରେ, ଯାହା ଫଳରେ ରୁବାଶୋଭ୍ ରକ୍ଷା ପାଇ-ଯିବ ଏବଂ କ୍ଲାଇମାକସ୍‌ର ବିସ୍ମୟାନନ୍ଦ ମିଳିଯିବ ଆମକୁ । ତଥାପି ଏଇ ଗପଟି ଆଦୌ ଅଣସୁଆଦିଆ ନୁହେଁ । କିନ୍ତୁ ଶେଷକଥାରେ ନୁହେଁ, ମୂଳରୁ ଶେଷ ଯାଏଁ, ସ୍ମୃତିକୁ ଖେଳେଇ ଖେଳେଇ । ବିପ୍ଳବୀ ରୁବାଶୋଭ୍‌ର ଉଦ୍ଦୀପ୍ତ ମଧ୍ୟାହ୍ନ କେମିତି ଧୀରେ ଧୀରେ ଅନ୍ଧାର ପାଲଟିଗଲା, ତା'ରି ଅନବଗୁଣ୍ଠନ । ଯାହା ସେ ବୁଝି ପାରିଲା ନାହିଁ, ବୁଝିଲା ବେଳକୁ ଅନେକ ଡେରି ହୋଇ ଯାଇଥିଲା । ବସ୍ତୁତଃ ବୁଝିପାରିବାର ଧକ୍‌କା ଆସୁଛି ଏଇକ୍ଷଣି, ଏଇ ନିର୍ଜନ କୋଠରୀରେ, ଆସନ୍ନ ମୃତ୍ୟୁର ଛାଇରେ । ଏକା ଥରକେ ନହେଁ, ପାଖୁଡ଼ା ପରେ ପାଖୁଡ଼ା ଖୋଲିଦେଇ ଗୋଟାଏ ବିକଟାଳ, ହେଲେ ସମ୍ପୂର୍ଣ୍ଣ

ବସ୍ତୁର ଦର୍ଶନରେ, ଯାହା ପଦ୍ମ ନୁହେଁ, ପଦ୍ମର ଅପରପାଖ । ଭଗବାନର ଶଇତାନ୍ । ରୁବାଷ୍କୋଭ୍‌ର ଅଭିଜ୍ଞାନ କେତେଦୂର ସତ, ଅବା ତଥ୍ୟମୂଳକ, ତା'ର ବିଗ୍ଭର ଛାଡ଼ି-ଦିଅ । କଳାତ୍ମକଦୃଷ୍ଟିରୁ ଚରିତ୍ର-ବନାମ-ସମାଜର ଏଇ ଅନବଗୁଣ୍ଠନ, ଆଲୁଅରୁ ଅନ୍ଧାର, ଜୀବନରୁ ମୃତ୍ୟୁ ଯାଏଁ, ଏହାହିଁ ପାଠକକୁ ମୁଗ୍ଧ କରେ । କିନ୍ତୁ କେତେଜଣ ଲେଖକ ଆରମ୍ଭ-ଶେଷର ପରମ୍ପରାଗତ ଦ୍ୱୈତ୍ୱକୁ ଭୁଲିଯାଇ କ୍ରମଶୀଳତାର ଏଭଳି ଏକ ଚମତ୍କାର ଦେଖାଇ ପାରିବେ ?

କିନ୍ତୁ ମୋର ବିଶ୍ୱାସ ଯେ ଏଭଳି ଏକ ଚମତ୍କାରିତା ସହଜସାଧ୍ୟ ନ ହେଲେ ମଧ୍ୟ ଏହି ଧରଣର ଆଉ ଗୋଟିଏ ନକ୍‌ସା ଗ୍ରହଣ କରଯାଇ ପାରେ, ଯେଉଁଥିରେ ଆରମ୍ଭ-ଶେଷର ଦ୍ୱୈତ୍ୱ ି ରହିଛି, କିନ୍ତୁ ଓଲଟି ଯାଇଛି କହିଲେ ଚଳେ । ରୁବାଷ୍କୋଭ୍ ଆଜି ମରିବ ଅଧଗତି ପୂର୍ବରୁ, ଏଇ ସମ୍ବାଦରେ ଛାତିରେ ଛନକା ପଶିବାର, ଆଖି ଫାଡ଼ିହୋଇ ଯିବାର କୌଣସି କାରଣ ନାହିଁ ବୋଲି କୁହାଯାଇ ପାରେ । ଜଣେ ମୃତ୍ୟୁ ଦଣ୍ଡରେ ଦଣ୍ଡିତ ବନ୍ଦୀ ଫାଶି ପାଇବ, ଏଥିରେ ଚମକି ଉଠିବାର ଉପାଦାନ ନାହିଁ । କିନ୍ତୁ ଧର ଯଦି ମୋ ଗପର ପ୍ରଥମ ଧାଡ଼ି ହେଲା ଯେ ବଡ଼ି ସକାଳେ ବାରିଆଡ଼କୁ ଗଲା-ବେଳେ ମୁଁ ଦେଖିଲି ଗୋଟାଏ କଟାମୁଣ୍ଡ ଅନେଇଛି ମୋତେ, ବରଗଛର କୋରଡରୁ ଦାନ୍ତ ଦେଖେଇଛି ଏବଂ ସେ ହେଉଛି......ହେଉଛି ଆମ ଲୋକ ପ୍ରିୟ ହେଡ୍‌ମାଷ୍ଟରଙ୍କ ମୁଣ୍ଡ—ତାହାହେଲେ ? ପ୍ରଥମରୁ ଏକ ପ୍ରଚଣ୍ଡ ସଂଘାତ, ଅଘଟଣ ଅଘଟଣାର ଅବା ଉଦ୍‌ଭଟର, ସେଇଠୁଁ କେଉଁ ପାଠକ ଚେଇଁ ଉଠିବ ନାହିଁ ? ଏ୍ୟାଁ, ଏମିତି କେମିତି ହେଲା ବୋଲି ଜାଣିବାକୁ ଗ୍ଭହିଁବ ନାହିଁ ? ଅବଶ୍ୟ ତୁମେ ହସି ହସି କହିପାର ଯେ ମୁଁ ଯେଉଁ ଉଦା-ହରଣ ଦେଲି, ତାହା ଡ଼ିଟେକ୍‌ଟିଭ୍ ଗଳ୍ପକୁ ହିଁ ଶୋଭପାଏ । କିନ୍ତୁ ବ୍ୟାପକ ଅର୍ଥରେ କେଉଁ ଗଳ୍ପରେ ଗୋଇନ୍ଦାଗିରି ନାହିଁ ନା ଆବିଷ୍କାର ନାହିଁ କହିଲ ଦେଖି ? ପ୍ରଶ୍ନ କେବଳ ଏତିକି ଯେ ପ୍ରଥମେ ଚମକେଇ ଦେଇ ପରେ ତା'ର ରହସ୍ୟ ଫେଡ଼ିବାକୁ ଗ୍ଭହିଁବ ନା ଧୀରେ ସୁସ୍ଥେ ରହସ୍ୟ ତିଆରି କରିବ ସାଧାରଣ ଘଟଣା-ଚରିତ୍ରକୁ ନେଇ, ପାଠକକୁ ଠକିବ ମନଇଚ୍ଛା ଏବଂ ଶେଷକୁ ତାକୁ ଚମକେଇବ କେଉଁ ଏକ ଆବି-ଷ୍କାରର ହୁନ୍ଦର ଦେଖାଇ ? ଯେଉଁ ବାଟେ ହେଲେ ସେଇ ଗୋଲେଇ, କିନ୍ତୁ ଭିନ୍ନ ଭିନ୍ନ ପନ୍ଥା । ତୁମକୁ କେତେବେଳେ କେଉଁଟା ଭଲଲାଗିବ, ତା'ର ବିଗ୍ଭର ତୁମ ଉପରେ ।

ଏଠି ବୋଧହୁଏ ଗୋଟିଏ ସ୍ପଷ୍ଟୀକରଣର ଆବଶ୍ୟକତା ଅଛି । କ୍ଲାଇମାକ୍‌ସ୍ ଧର୍ମ ହିସାବରେ ମୁଁ "ଚମକ" , "ସଂଘାତ" ଆଦି ଶବ୍ଦର ପ୍ରୟୋଗ କରୁଛି, ଏହାର ଅର୍ଥ ନୁହେଁ ଯେ ମୁଁ କ୍ଲାଇମାକ୍‌ସ୍‌ରେ ଗର୍ଜନ (bang) ର ପକ୍ଷପାତୀ । ବରଂ

ବୌଦ୍ଧିକ ସ୍ତରରେ ଏବଂ ବିଶେଷତଃ ଚିନ୍ତାମୂଳକ ଗଳ୍ପରେ, ଚମକ ଅବା ସଂଘାତର ଗର୍ଜନ, ଅର୍ଥାତ୍ ଗର୍ଜନରୂପୀ ଅଶ୍ଳୀଳତା ନ ରହିବା କଥା । ତଥାପି ପାଠକ ଚେଇଁ ଉଠିବ,ତଥାପି ତା'କୁ ବାଧିବ ଯେଉଁଠି ବାଧିବା ଉଚିତ । ଏବଂ ସେଥିରେ ଆବିଷ୍କାରର ମର୍ଯ୍ୟାଦା କ୍ଷୁର୍ଣ୍ଣହେବ ନାହିଁ; ବରଂ ତାହା ଗଭୀର ଏବଂ ବହୁବିଧ ସଂଭବନାରେ ସମୃଦ୍ଧ ହୋଇ ଉଠିବ ବୋଲି ଲଭ ସୁଚିଂତିତ ମତ ।

ଉପରୋକ୍ତ ନକ୍ସା ପ୍ରତି ଆନୁଗତ୍ୟ ଛଡା ପ୍ଲଟ୍‌ରେ ଆଉ କ'ଣ ରହିବା ଦରକାର ଯେଉଁଥିରେ ସତ-ମିଛ ସଂପୂର୍ଣ୍ଣ ସତ ବୋଲି ମନେହେବ ? ଘଟଣା-ଚରିତ୍ର– ପରିବେଶର ସଂଯୋଜନାରେ ଆଉ କ'ଣ କରିବାଉ ବା ନ କରିବାର ଅଛି ?

କେତୋଟି ସାଧାରଣ ସ୍ୱତଃସିଦ୍ଧ ନିୟମ ଅଛି, ଯାହାକୁ ପ୍ରତ୍ୟେକ ଲେଖକ ସ୍ୱୀକାର କରେ, କିନ୍ତୁ ଲେଖୁଁ ଲେଖୁଁ ବେଳେବେଳେ ତା'ର ଅନୁଶାସନକୁ ମାନିନେଇ ପାରେ ନାହିଁ । 'ଅଧିକ-ସୁନ୍ଦର'ର ପ୍ରଲୋଭନକୁ ଦବେଇ ଦେଇ ପାରେ ନାହିଁ । ପହିଲି ନିୟମ ହେଲ, ଯାହାକୁ ଯେମିତି । ଦ୍ୱିତୀୟ ନିୟମ, ଯାହାକୁ ଯେତିକି ।

ଏଇ ଯେଉଁ ଅର୍ଦ୍ଧଶିକ୍ଷିତ, ହୁଣ୍ଡା, କିନ୍ତୁ ଦିଲଦାରିଆ ଚରିତ୍ରଟିଏ ସୃଷ୍ଟିକଲ, ତା'ପାଇଁ ଗାଆଁ ଗୋହିରୀ ଭଲ ନା ମହାନଗରୀର ଫୁଟ୍‌ପାଥ୍ ? ଭାଗବତ ଟୁଙ୍ଗି ନା କଫି ହାଉସ୍ ? ତା'ର ମନୋବୃତ୍ତିସଂଭୂତ କେଉଁ ଏକ ଝଲକର ଶେଷଦୃଶ୍ୟ ଦେଖାଇବାକୁ ହେଲେ ତାକୁ କିଭଳି ପରିବେଶରେ ଚଳପ୍ରଚଳ ହେବାକୁ କହିବ ? ତୁମେ ହୁଏତ ସହଜ ଉତ୍ତର ଦେବ (ମୋରି ପାଠ ମୋତେ ଶୁଣେଇଲ ପରି) ଯେ–ଲେଖକ ଯେଉଁ ପରିବେଶକୁ ଭଲଭାବରେ ଚିହ୍ନିଛି ଏବଂ ଭାବୁଛି ଯେ ତା'ର ପାଠକ ମଧ୍ୟ ଚିହ୍ନିଥିବ, ଚରିତ୍ର ମହାଶୟ ସେଇଠି ତାଙ୍କ କୃତିତ୍ୱ ଦେଖାଇବେ ନାହିଁ ତ ଆଉ ଯିବେ କୁଆଡ଼େ ? ଠିକ୍ କଥା । କିନ୍ତୁ ତା'ଛଡ଼ା ଅନ୍ୟ ଏକ ବିଗ୍ଭର ମନକୁ ଆଣିବାକୁ ପଡ଼ିବ । ସେହି ଲୋକଟି ପାଇଁ କେଉଁ ପରିବେଶ ଅନୁକୂଳ ଏବଂ କେଉଁଟି ପ୍ରତିକୂଳ ହେବ ବୋଲି ମନେକରୁଛ ? ଉଭୟର ଉପଯୋଗିତା ଅଛି । ଅନୁକୂଳ ପରିବେଶରେ ତା'ର ପ୍ରତ୍ୟକ୍ଷ ନିଜତ୍ୱର ଚମତ୍କାରିତା ଫୁଟି ଉଠିବ । କିଂତୁ ପ୍ରତିକୂଳ ପରିବେଶରେ ତା'ର ପ୍ରଚ୍ଛନ୍ନ ବ୍ୟକ୍ତିତ୍ୱର ଅଂଶଟିଏ, ଭଲହେଉ ବା ମଂଦହେଉ ଧରା ପଡ଼ିଯିବ । ତେଣୁ ତୁମ ଚରିତ୍ରର ଅର୍ଥାତ୍ ତୁମର ଭିତିରି ଉଦ୍ଦେଶ୍ୟ ଉପରେ ସବୁ ନିର୍ଭର କରେ । ଏବଂ ସେହି ଅନୁଯାୟୀ ପରିବେଶ ସୃଷ୍ଟିକଲେ ସଂଯୋଜନା ବିଶେଷ ଭାବରେ ସଫଳ

ହେବ ବୋଲି ମୋର ବିଶ୍ୱାସ । ଏମିତି ହୁଏ ନାହିଁ ବେଳେ ବେଳେ କାରଣ ତୁମେ ଯେଉଁ ଚରିତ୍ରଟିକୁ ଭଲଭବରେ ଚିହ୍ନିଛ ସେ ଗାଉଁଲି ହୋଇଥିଲେ ମଧ୍ୟ ତୁମର ଅଭ୍ୟସ୍ତ ଅବା ଅନ୍ତରଂଗ ପରିବେଶ ହୁଏତ ସହରିଆ । ଦୁଇଟିକୁ ଏକାଠି କଲେ କ୍ଷତି ନାହିଁ, ଯଦି ଚରିତ୍ରକୁ ନେଇ ତୁମର କଳ୍ପିତ ସଂଭବନା ସଂଘାତମୂଳକ ହୋଇଥାଏ, ଯଦ୍ଦ୍ୱାର ପ୍ରତ୍ୟକ୍ଷ ସହଜେ ଆଗେଇ ଯାଇ ପାରିବ ନାହିଁ ତା'ର ସ୍ୱଧର୍ମୀ ପୂର୍ଣ୍ଣତା ଆଡ଼କୁ ବିଚିତ୍ର ପ୍ରଚ୍ଛନ୍ନ ହିଁ ଉଂକି ମାରିବ । ତେଣୁ 'ଯାହାକୁ ଯେମିତି'ର ଅଂକ ହେଲା ଯେମିତିକା ଚରିତ୍ର/ଯେମିତିକା ଉଦ୍ଦେଶ୍ୟ ସେହିଭଳି ପରିବେଶ । ସେହିପରି ଭବରେ ଯେମିତିକା ଚରିତ୍ର/ଯେମିତିକା ଉଦ୍ଦେଶ୍ୟ ସେହିଭଳି ଘଟଣା ।

ଏବେ ନିଜ ବିଷୟରେ ଗୋଟିଏ କଥା କହୁଛି । ମୋର ବୃତ୍ତିଗତ ଜୀବନ ମୋତେ ଦେଶ ବିଦେଶରେ କେତେ ଅତ୍ୟାଧୁନିକ, ଉଚ୍ଚମନ୍ୟ, ଏବଂ ଜାଜ୍ୱଲ୍ୟମାନ ଅଭ୍ୟଂତରକୁ ଟାଣି ନେଇଛି–ଯାହାକୁ ଗୋଟିଏ ଶବ୍ଦରେ ପଂଚତାରକା କଲ୍‌ଚର୍ ବୋଲି କୁହାଯାଇପାରେ । କିଂତୁ ଦୁଃଖର ବିଷୟ ମୁଁ ସେଥିରେ ସାମିଲ୍ ହୋଇ ପାରିଲି ନାହିଁ । ମାତ୍ର ଅତିଥି ଅବା ଦେଖଣାହାରୀ ହୋଇ ରହିଗଲି । ଏଥିପାଇଁ ଜନ୍ମଗତ ଚାରିତ୍ରିକ ଦୁର୍ବଳତା, ସାଆନ୍ତିଆ ଗଉଁ, ଛୋଟ ସହରିଆ ସଂସାର, ନା ଆଉ କାହାକୁ ଦୋଷୀ କରଯିବା ଉଚିତ, ମୁଁ କହି ପାରିବି ନାହିଁ । ତେବେ ଲେଖକ ହିସା-ବରେ ସେହି ସଂସାର ମୋର ଅନୁକୂଳ ହୋଇ ପାରିଲା ନାହିଁ । ତେଣୁ ଯଦିଓ ତା'ର ବିଭିନ୍ନ ପରିବେଶ ମୋର ବେଶି ଚିହ୍ନା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ; ମୋର "ଉଚ୍ଚାଂଗ" ଚରିତ୍ରମାନେ ସେଥିରୁ ନିଜ ଲୋକ ହୋଇ ପାରିବେ ନାହିଁ । ଫଳରେ ତା' ସାଂଗରେ ଲଢ଼େଇ କଲେ ଏବଂ ଲଢ଼େଇରେ ହାରିଗଲେ ମଧ୍ୟ ବିଜେତାକୁ ବିଦ୍ରୂପରେ ପୋତି ପକେଇଲେ । ସଂଘାତରୁ ଆଗେଇଯାଇ ନିଷ୍ଫଳ ସଂଘର୍ଷର ବୀରତ୍ୱ ଦେଖାଇଲେ, ଯାହା ବେଳେ ବେଳେ ହାସ୍ୟସ୍ପଦ (ହୁଏତ ସେହେତୁ ରସାଳ) ହୋଇଥିବ । ତେଣୁ ବେଳେ ବେଳେ ମନେହୁଏ ଯେ–ତାଙ୍କ ନିଜଲୋକ ହୋଇଥିଲେ, ଏବଂ ସେହେତୁ ପରିବେଶ–ଚରିତ୍ରର କ୍ଷୀର ନୀର ସଂପର୍କ ଆଣି ଦେଇଥିଲେ, ମୁଁ କ'ଣ ତାଙ୍କ ଚକମକି ଗୁଇଁଚତୁର ଆବରଣ ତଳେ ଥିବା ସତମଣିଷଟିର ଚରିତ୍ରକୁ ଆହୁରି ଭଲ ଭବରେ ଫୁଟେଇ ପାରି ନ ଥାଆନ୍ତି ! କିନ୍ତୁ ହାୟ ! ତା' ହେଲା ନାହିଁ, ମୁଁ ସେଇ ଧୂଳି-ଧୂସର, ହନ୍ତସନ୍ତିଆ ଏବଂ କ୍ରୋଧୀ ମଧ୍ୟବିତ୍ତ ହୋଇ ରହିଗଲି । ବାହାର ଲୋକ ।

–୦–

"ଯାହାକୁ ଯେମିତି ।" ଏହି ସନ୍ଦର୍ଭରେ ପରିବେଶଠାରୁ ଘଟଣାର ମୂଲ୍ୟ ବେଶି ଏବଂ ଚରିତ୍ର ସହିତ ଘଟଣାର ପରିଣୟକୁ ପ୍ରଶୋଭନ କରିବା ଅଧିକ ଆବଶ୍ୟକ ବୋଲି ଦାବୀ କରିବା ଭ୍ରମାତ୍ମକ ନୁହେଁ । ଘଟଣା ଘଟିବା ମାନେ ଚରିତ୍ରର ଚେତନାରେ ଗୋଟାଏ ଟେକା ପଡ଼ିଲ; ତାକୁ କିଛି ଭବିବାକୁ ପଡ଼ିବ ଅବା କିଛି କରିବାକୁ ପଡ଼ିବ । ତଥାକଥିତ ଘଟଣାବିହୀନ ଏବଂ ଚରିତ୍ରମୂଳକ ଗଳ୍ପରେ ମଧ୍ୟ ଚେତନାର ପ୍ରବାହରେ, ସ୍ମୃତିରେ ଅବା ବର୍ତ୍ତମାନରେ, ଉପଯୋଗୀ ଘଟଣା ଘଟାଇବାକୁ ପଡ଼ିବ, ଯେପରିକି ଚରିତ୍ରବିଶେଷ କ୍ରମଶଃ ପରିବର୍ଦ୍ଧିତ ହୋଇ ଶେଷକୁ କେଉଁ ଏକ ସମ୍ପୂର୍ଣ୍ଣ ଅବା ବିଚିତ୍ର ରୂପ ଦେଖାଇ ପାରିବ ଆମକୁ । କିଂତୁ ପରିବେଶର ସେ ଦାୟିତ୍ୱ ନାହିଁ । ମୌଳିକ ଅର୍ଥରେ ସେ ହେଉଛି ସାକ୍ଷୀ । ନିରପେକ୍ଷ । ଅବଶ୍ୟ ସେ ଚେତନାକୁ ରଂଗେଇ ଦେଇ ପାରିବ, ଘଟଣାର ସଂଘାତକୁ କମେଇ ବଢ଼େଇ ପାରିବ । ତେବେ ଇଚ୍ଛାକଲେ ଲେଖକ ତାକୁ "ଚୁପ୍ ହୋଇ ରହି ଥା" ବୋଲି କହିଲେ କିଛି କ୍ଷତି ନାହିଁ, ଯଦି ଲେଖକର ମତଲବ ହେଉଛି ପରିବେଶ ଜରିଆରେ କେବଳ ଗୋଟାଏ ଆତ୍ମୀୟତା ଆଣିଦେବା, ଯେପରିକି ଚରିତ୍ର-ଘଟଣାର କାରବାର ଆହୁରି ଚିହ୍ନା ଚିହ୍ନା ମନେହେବ, ସତ-ମିଛକୁ ସତର ମୁଖା ପିନ୍ଧେଇବାରେ ସାହାଯ୍ୟ କରିବ । କିଂତୁ ଇଚ୍ଛାନୁଯାୟୀ ଘଟଣାକୁ ସେହିଭଳି ନୀରବ, ନିଷ୍କ୍ରିୟ, ସ୍ୱାଧୀନ ଏବଂ ସ୍ୱାବଲମ୍ବୀ କରି ରଖି ହେବ କି ? ତା'ର ସେ ଘଟିଯିବ, ଚରିତ୍ରକୁ କିଛିହେଲେ ଦେବ ନାହିଁ କି ତା'ଠୁ କିଛି ନେବ ନାହିଁ, ତଥାପି ରହିଥିବ ? କେଉଁଥିପାଇଁ ? ଆପଣା ଗୁଣରେ ଚହଟିବ, ଗଳ୍ପର ଶୋଭ ବଢ଼େଇବ, ଏଇଥିପାଇଁ ?

ଗଳ୍ପମାଷ୍ଟର କହିବ—ନା, ତୁଚ୍ଛା ମେଦବର୍ଦ୍ଧକ ଘଟଣା ପାଇଁ ସ୍ଥାନ ନାହିଁ ସମୟ ନାହିଁ ଆମର । ଉପନ୍ୟାସରେ ହୁଏତ ତାକୁ ଅଣାଯାଇ ପାରେ ପୃଷ୍ଠଭୂମି ହିସାବରେ କିଂତୁ ଗଳ୍ପରେ ପୃଷ୍ଠଭୂମିର ବିକର୍ଷିତ ବିକାସ ସମ୍ଭବ ନୁହେଁ ।

ଗଳ୍ପ ଭିତରକୁ ଆସିବାକୁ ଋହୁଁଥିବା ସ୍ୱାଧୀନମନ୍ୟ ଘଟଣା ପାଟିକରି ଉଠିପାରେ କାହିଁକି ସମ୍ଭବ ନୁହେଁ ? ଗଳ୍ପରେ କ'ଣ ପୃଷ୍ଠଭୂମିର ଅବକାଶ ନାହିଁ ?

ଏହି ପ୍ରକାର କଂଦଳକୁ ବଢ଼େଇଲେ ବଢି ଗ୍ଲଲିଥିବ । ତେଣୁ ଘଟଣା-ପରିବେଶର ପାରସ୍ପରିକ ସଜ୍ଞା ଓ ସୀମାରେଖା ବିଷୟରେ କିଛି କହିବାକୁ ପଡ଼ିବ, ଯଦ୍ଦ୍ୱାରା ଆପଣା ଆପଣା ଦାୟିତ୍ୱକୁ ସମ୍ଭାଳି ନେବାରେ ଅସୁବିଧା ହେବ ନାହିଁ । କେତୋଟି ସ୍ପଷ୍ଟୀକରଣ : (୧) ଯେଉଁ ଘଟଣା ଐତିହାସିକ, ସାମୂହିକ ଏବଂ ବ୍ୟାପକ, ତା'ର ଲମ୍ବା ଛାଇକୁ ସାମାନ୍ୟ ପୃଷ୍ଠଭୂମି ବୋଲି କହି ହେବ ନାହିଁ । ଯଥା, ଯୁଦ୍ଧ, କ୍ରାନ୍ତି, ଦୁର୍ଭିକ୍ଷ ଓଗେର । କାରଣ ସେଇ ଛାଇ ଚରିତ୍ରମାନଙ୍କ ବ୍ୟକ୍ତିଗତ ପ୍ରେମ-ହିଂସାର ଖେଳରେ ଏକ ବିଶିଷ୍ଟ ଆବେଗଧର୍ମୀ ଗୁଣ ଆଣିଦିଏ, ଛାଇରୂପୀ ଭୂତର ମୁକାବିଲା କରିବା ପାଇଁ ତାକୁ ଚରିତ୍ର ବିଶେଷ ସ୍ୱୀକାର କରୁ ବା ନ କରୁ । ତେଣୁ ସେହିଭଳି ଘଟଣା ନିଷ୍କ୍ରିୟ ନୁହେଁ । ଏବଂ ତାକୁ ତୁମ ଗପ ଭିତରକୁ ଆଣିବାକୁ କେହି ମନାକରୁ ନାହିଁ । ଆପତ୍ତି ହେଉଛି ଯେଉଁଠି ଘଟଣା ସାମାନ୍ୟ ଓ ସାଧାରଣ ଏବଂ ଚରିତ୍ର ସାଙ୍ଗରେ ତା'ର କୌଣସି କାରବାର ନାହିଁ, ପ୍ରତ୍ୟକ୍ଷରେ ଅବା ପରୋକ୍ଷରେ କିନ୍ତୁ ତଥାପି ତାକୁ ଘଟାଇବାକୁ ଗ୍ଲହୁଁଛ, ପରିବେଶକୁ ଲମ୍ବେଇଲା ପରି । ସେଭଳି ଅନିୟତ ଅଳସ ବିଳାସରେ ଗପର କେନ୍ଦ୍ରୀୟତା (ଫୋକସ୍) ବ୍ୟାହତ ହେବ, ଏଇ ହେଉଛି ମୋର ଆଶଂକା । (୨) ଚରିତ୍ର-ଘଟଣାର ଘାତପ୍ରତିଘାତ ଏବଂ ସେଥିରୁ ଉଦ୍‌ଭୂତ ବକ୍ତବ୍ୟକୁ ବାଢିବା ଦିଗରେ ପରିବେଶର ଦାୟିତ୍ୱ ନାହିଁ ବୋଲି ପୂର୍ବରୁ କହିଛି । କାରଣ ତା'ର ପ୍ରଥମ କାମ ହେଲା ପାଠକକୁ ଚିନ୍ତା-ଚିନ୍ତାପଣର "ହଁ ତ" ଆଡ଼କୁ ନେଇଯିବା । ତା'ବୋଲି ସେ ଅଧିକ ଦାୟିତ୍ୱ ବରଣ କରିବାର ଦାୟିତ୍ୱରୁ ବଂଚିତ ନୁହେଁ । ମୋଟେ ନୁହେଁ । ବରଂ "ସମ୍ପୂର୍ଣ୍ଣ ସତ"ର ରଂଗ ଓ ରେଖ—ଯାହାର ଆଲୋଚନା ପରେ କରିବା—ଆଣିଦେବା ଦିଗରେ ପରିବେଶର ଭୂମିକା ଯଥେଷ୍ଟ ରହିଛି, ସେହେତୁ ବେଳକାଳ ଦେଖି ତାକୁ ସକ୍ରୀୟ କରାଇବା ଉଚିତ । ପ୍ରକୃତିକୁ ଶିଶିର-ଲୁହ ଝରାଇବାର, ଅବା ସିରିସିରି ଖିଲିଖିଲି ହୋଇ ହସାଇବାର ସାପେକ୍ଷତା (pathetic fallacy) ହିଁ ପରିବେଶର ଶେଷକଥା ନୁହେଁ । ତା'ର କାବ୍ୟାଦର୍ଶ ହେଲା "ମେଘଦୂତ"ର ମେଘ ଅବା ପୂର୍ବବର୍ଣ୍ଣିତ "ମୁଣ୍ଡିଆ"ର ପାହାଡ, ଯେଉଁଠି ସେ ଚରିତ୍ର ଅବା ଘଟଣାର ପ୍ରତିଦ୍ୱନ୍ଦୀ ହୋଇ ଠିଆ ହେବାକୁ ଗ୍ଲହେଁ । ତା'ର ସେହି ଆସ୍ଫାଳନ ଛଳନା ମାତ୍ର, ଯେହେତୁ ମଣିଷ, ଏଣୁ ଚରିତ୍ର ହିଁ ସର୍ବପ୍ରଧାନ । କିଂତୁ ମୋର କହିବା କଥା ହେଉଛି ଯେ ପରିବେଶକୁ ମଧ୍ୟ ଏଭଳି ଏକ ଉତ୍ତୁଂଗ ସ୍ତରକୁ ନେଇଯାଇ ହେବ, ଏବଂ ତଦ୍ଦ୍ୱାରା ମଣିଷଦଶାର କେଉଁ ଏକ "ସମ୍ପୂର୍ଣ୍ଣ ସତ"ର ଅନୁଭବ ଆଣିଦେଇ ହେବ । ସେଠି ପରିବେଶ ହେବ ପ୍ରତୀକ, ଯାହା ମଣିଷଠୁଁ ବଡବୋଲି ମନେହେବ । ତୁମ ପ୍ଲଟକୁ ସେହି ପ୍ରକାର କାବ୍ୟିକ

ଢାଂଗ୍ ଦେଇ ପାରିଲେ ଭଲକଥା, ଯଦି ତୁମେ ତା'ର ନକ୍‌ସାକୁ ଗଢିଛ ସେହିଭବରେ ଏବଂ କାବ୍ୟିକତାର ଶବ୍‌ଦଯୋଜନା, ରୂପକଳ୍ପ ଇତ୍ୟାଦିର ଉପଯୋଗୀ ସରଂଜାମ ଅଛି ତୁମ ପାଖରେ ।

କିନ୍ତୁ ଭୁଲିବାକୁ ହେବ ନାହିଁ ଯେ ତିନିକି ତିନିହେଁ ଭିନ୍ନ—ଚରିତ୍ର, ଘଟଣା ଓ ପରିବେଶ ଏବଂ ମୋ ମତରେ ତାଙ୍କ ପ୍ରାଧାନ୍ୟ ମଧ୍ୟ ସେହି କ୍ରମରେ, ପ୍ରଥମେ ଚରିତ୍ର...... । ସେହି ଦୃଷ୍ଟିରୁ ଗଢିବାକୁ ହେବ ବାଗେଇବାକୁ ହେବ, ଯାକୁ ତା'ପାଇଁ । ଯାହାକୁ ଯେମିତି ।

"ଯାହାକୁ ଯେମିତି" ପଛକୁ "ଯାହାକୁ ଯେତିକି ।" ଖାଲି ଅନୁରୂପ ଗଢ଼ଣ ନୁହେଁ, ଅନୁରୂପ ପରିମାଣ । କାହାପାଇଁ କେଉଁ ପରିମାଣରେ ବାକ୍ୟବ୍ୟୟ କଲେ ଭଲ ହେବ । ଧର ପୂର୍ବବର୍ଣ୍ଣିତ ଇଂରାଜୀ ଗଳ୍ପ Darkness at Noon । ସେଠି ନାୟକର ଭବନାକ୍ରମରେ ପ୍ରକୃତି ଆସି ପହୁଂଚୁଛି, କିନ୍ତୁ କେବଳ ପଦେକଥା କହିବା ପାଇଁ । କେତେକାଂଶରେ ବିରମ ଏବଂ କେତେକାଂଶରେ ନିର୍ମମ ନିର୍ବିକାର ସମୟର କ୍ରମ ସୂଚାଇବା ପାଇଁ । କେବଳ ଏଇ କେତୋଟି ଧାଡ଼ି —

"ରୁବାଷୋଭ୍ ଝରକାର ରେଲିଂବାଟେ ମେସିନ୍‌ଗନ୍ ତୋରଣ ଉପରେ ଥିବା ଚେନାଏ ନୀଳ ଆକାଶକୁ ଅନେଇଲା । ନୀଳ ଗୋଲପି ହୋଇ ଆସୁଥିଲା, ସନ୍ଧ୍ୟା ଘନେଇ ଆସୁଥିଲା । ତୋରଣ ଚାରିପାଖରେ ଦଳେ କଳା ଚଢେଇ ଧୀରେ ସୁସ୍ଥେ ଡେଣା କାଟି କାଟି ଘୁରି ବୁଲୁଥିଲେ ।"

ଏହାଠାରୁ ଅଧିକ କହିଥିଲେ ଚରିତ୍ରର ଗପ ଧିମେଇ ଯାଇ ନ ଥାଆନ୍ତା ? ପ୍ରକୃତିର ପ୍ରବେଶ ଅନୁପ୍ରବେଶ ବୋଲି ମନେହୁଅନ୍ତା ନାହିଁ ?

"ଯାହାକୁ ଯେମିତି" ଓ "ଯାହାକୁ ଯେତିକି"ର ମୋଟକଥା ହେଲା ନିର୍ଣ୍ଣିତ ଆପେକ୍ଷିକତା (laid-out perspective)କୁ ଜଗିରଖିବା । ସବୁ କ୍ଷେତ୍ରରେ ଚରିତ୍ର ଅର୍ଥାତ୍ ମଣିଷ ଦଶାର 'ଅଗ୍ରାଧିକାର ଥିଲେ ମଧ୍ୟ ତୁମ ଗପ ଉପରେକ୍ତ ଗପ ପରି ଚରିତ୍ରପ୍ରଧାନ ନ ହୋଇ ପ୍ରକାରନ୍ତରେ ଘଟଣା ପ୍ରଧାନ ଅଥବା ପରିବେଶ ପ୍ରଧାନ ହୋଇପାରେ । ଯଦିଓ ଶେଷକୁ ତୁମେ କେଉଁ ମଣିଷ ଅବା ମଣିଷଜାତି ଉପରେ କିଛି ହେଲେ କହିବାକୁ ବାଧ୍ୟ । ଯଥା କେଉଁ ପ୍ରାକୃତିକ ବିପର୍ଯ୍ୟୟ; ଦୁର୍ଭିକ୍ଷ ବନ୍ୟା ଆଦି ଘଟଣାର "ବଡ଼ପଣ" । ସେଠି ତାଙ୍କ ବଡପଣକୁ ବଜାୟ ରଖିବାକୁ ପଡ଼ିବ । କାରଣ

ଆଶା କରଯାଏ ତୁମର ଉଦ୍ଦେଶ୍ୟ ହେଉଛି ଯେ ସେଇ ବଡପଣର ସଂଘାତରେ ସାନ-ମଣିଷର କଅଣ ହୁଏ ତାରି ବୈଚିତ୍ର୍ୟ ଦେଖାଇବା । ମୋର ମନେପଡୁଛି ତାରାଶଂକର ବନ୍ଦ୍ୟୋପାଧ୍ୟାୟଙ୍କର "ନାଉରିଆ ତାରିଣୀ" ନାମକ ଗୋଟିଏ ବଂଗଳା ଗପ । ସେଠି ମୁଖ୍ୟ ଚରିତ୍ର ହେଲା ନାଉରିଆ ତାରିଣୀ । ହେଲେ ସେ ସାଧାରଣ ସ୍ତ୍ରୀସ୍ବଆଗ! ଭଲ ମଣିଷଟିଏ । ଏବଂ ତା'ର ଭଲମଣିଷ ପଣିଆକୁ ଘେରେଇ ରଖିଛି, ଚିହ୍ନାଉଛି, ନଗ୍ନଉଛି, ନଦୀ ମୟୂରାକ୍ଷୀ ଓ ତା'ର ଲୀଳାଖେଳା । ବାକ୍ୟବ୍ୟୟର ଅନୁପାତରେ ନୁହେଁ, ଏଇ କଠୋର ସଂପର୍କୀୟତାର ବର୍ଣ୍ଣନାରେ ହିଁ ମୟୂରାକ୍ଷୀର ବଡ଼ପଣ ଫୁଟି ଉଠିଛି । ମହତୀ ମୟୂରାକ୍ଷୀ ଶେଷକୁ ଯେଉଁ ରୂପ ଦେଖାଇଲା, ନାହିଁ ନ ଥିବା ରାକ୍ଷସୀର ରୂପ, ତା'ର ସଂଘାତରେ ସାନମଣିଷ ତାରିଣୀର କଅଣ ହେଲା ? ଘଡ଼ିସନ୍ଧି ବେଳେ ସେ କିଭଳି ବୀରତ୍ୱ ଅବା ସ୍ୱାର୍ଥରସ୍ୱରୂପ ଦେଖାଇଲା ଆମକୁ ? ଏଇ ହେଲା ଗପର ସାରାଂଶ । ଯୁଦ୍ଧ, କ୍ରାନ୍ତି ଆଦି ଐତିହାସିକ ଘଟଣାର ସଂଘାତରେ ବି' ସେମିତି ହୁଏ, ସାଧାରଣ ମଣିଷ ଅସାଧାରଣ ହୋଇଉଠେ, ତା'ର ଅସଲ ଅର୍ଥାତ୍ ଛପି ରହିଥିବା ଚେହେରା, ମଣିଷ ଦଶାର କେଉଁ ଏକ ଅପୂର୍ବ ବିସ୍ଫୋରଣର ହାଲୁକା, ଦିଗ ଦେଖାଏ ଆମକୁ । ହୁଏତ ଭୟ ଦେଖାଏ । ତେଣୁ ସେଥିପୂର୍ବରୁ ସାଧାରଣକୁ ଯେକୌଣସି ଉପାୟରେ, ଗଢଣରେ ଅବା ବାକ୍ୟବ୍ୟୟର ଅନୁପାତରେ, ସ୍ୱଳ୍ପସାମାନ୍ୟ କରି ରଖିବା ଉଚିତ ହେବ ନାହିଁକି ? ଅପରପକ୍ଷରେ ଯେଉଁ ଗପରେ ଚରିତ୍ର ହିଁ ପ୍ରତ୍ୟକ୍ଷ, ଚରିତ୍ର ହିଁ ଘଟଣା, ଯଥା ଉପରୋକ୍ତ Darkness at Noon, ସେଠି ଘଟଣା-ପରିବେଶ କେବଳ ଇଂଧନ ଅବା ବିଗମର କାମ କରିବ ସିନା, ତହୁଁ ଦୂରକୁ ହାତ ବଢ଼େଇବା କ୍ଷତିକାରକ ହେବ ନାହିଁକି ?

ଚିହ୍ନା ଚିହ୍ନାପଣର 'ସତ'ରୁ ଆଗେଇ ଯାଇ 'ସଂପୂର୍ଣ୍ଣ ସତ'କୁ ଆଣିବାକୁ ହେଲେ କିଛିଟା ରଂଗ ଓ ରେଖର ଆବଶ୍ୟକତା ରହିଛି । ପରିବେଶର ଦାୟିତ୍ୱରୁ ବଳି ଉଚ୍ଚା-ଭିଳାଷ ସଂପର୍କରେ ଏଇଯେଉଁ କଥାଟି କହିଲି କିଛି ସମୟ ଆଗରୁ, ତା'ର ବିଶଦ-ବ୍ୟାଖ୍ୟା କରିବାକୁ ହେବ । ମନେଥିବ ଯେ ଚରିତ୍ରର ନିରୂପଣ ଓ ନିର୍ମାଣ ନେଇ କେତୋଟି ସାନକଥା କହିଥିଲି । ପ୍ରଥମେ କହିଥିଲି ଯେ ନିଜକୁ ପଗ୍ଗରି ସଂତୁଷ୍ଟ କରିବ— (୧) ଚରିତ୍ରକୁ ଚିହ୍ନିଛ ତ ? (୨) ତୁମ ପାଠକ ତାକୁ ଚିହ୍ନିଛି ତ ? (୩) ତାକୁ ଚିହ୍ନେଇବାରେ ଭଲଲାଗୁଛି ତ ? କିନ୍ତୁ ତା'ପରେ ପରେ ଏଇ ଚିହ୍ନା-ଚିହ୍ନା ଚରିତ୍ରକୁ 'ଚରିତ୍ର'ଟିଏ ଗଢି ପାରିଲେ ଭଲହେବ ବୋଲି ପରାମର୍ଶ ଦେଇଥିଲି । ଚରିତ୍ର ଛଡ଼ା ଘଟଣା ଓ ପରିବେଶ କ୍ଷେତ୍ରରେ ମଧ୍ୟ ଏହି ପ୍ରକାର କ୍ରମଶୀଳ ଏବଂ ଉତ୍ତରଣଧର୍ମୀ

ସୁପାରିଶ ପ୍ରଯୁଜ୍ୟ । ତା'ହେଲେ ଯାଇଁ ପ୍ଲଟର ସଂଯୋଜନା ସମ୍ୟକ ସଫଳତା ହାସଲ କରିପାରିବ, ଆଶାୟୀ ପାଠକର ଚାହିଦା ପୂରଣ କରିହେବ । ଅର୍ଥାତ୍ ପ୍ରଥମେ ଚିହ୍ନା-ଚିହ୍ନାପଣର ଆତ୍ମୀୟତା ଆଣିଦେବା ପାଇଁ ସେଇ ତିନୋଟି ପ୍ରଶ୍ନର ତୁଷ୍ଟି । ଯେମିତିକି କଟକ ଛକରେ ଷଣ୍ଢଲଢେଇ ହେଉ କି ପଂଜାବରେ ଆତଂକ, ଚିଲିକାରେ ସନ୍ଧ୍ୟାହେଉ କି ଗୁଲ୍‌ମାର୍ଗ୍‌ରେ ସକାଳ, ଘଟଣା ପରିବେଶ ନିଜର ବୋଲି ମନେହେବ ତୁମକୁ ଓ ପାଠକକୁ । କିନ୍ତୁ ସେତିକିରେ କ'ଣ ସରିଲା ? ନା । 'ସମ୍ପୂର୍ଣ୍ଣ ସତ'ର ଉପଲବ୍ଧି ଆଣିବାକୁ ହେଲେ ଘଟଣା ଓ ପରିବେଶରେ ମଧ୍ୟ ଅଳ୍ପବହୁତ ରଂଗ ଲଗେଇବାକୁ ପଡ଼ିବ ଏବଂ ଚରିତ୍ର ସାଙ୍ଗରେ ତାକୁ (ବିଶେଷକ ଘଟଣାକୁ) ଜୁଟାଇବାରେ କିଛିଟା ରେଷ । ଇଂରାଜୀ ସାହିତ୍ୟର ପରିଭାଷାରେ କହିବାକୁ ଗଲେ colour ଏବଂ intensity । ତା' ନ ହେଲେ ଚରିତ୍ର ବନାମ ଚରିତ୍ର ତଥା ଚରିତ୍ର ବନାମ ଘଟଣା-ପରିବେଶର କ୍ରିୟା-ପ୍ରତିକ୍ରିୟାକୁ ଘାତ-ପ୍ରତିଘାତ କହି ହେବ କି ? ଏଇ ଘାତ-ପ୍ରତିଘାତ ଏବଂ ତଦ୍‌ଭବ କଂଦଳର ରେଳ ନ ଉଠିଲେ କ୍ଲାଇମାକ୍‌ସ୍ କୋଉ କାମକୁ ପାଇବ ?

ଏଇଠି ଦୁଇଟି ଆପାତ ବିରୋଧୀ ଲେଖକପଣିଆର ସୂଚନା ଦେଉଛି । ଉଭୟର ଭଲ ଅଛି, ଯେହେତୁ ଉଭୟ ଶିବିରରେ ଏକାଧିକ ସଫଳ ଲେଖକ ଦେଖିବାକୁ ମିଳିବେ । କିନ୍ତୁ ମୋର ଉଦ୍ଦେଶ୍ୟ ତୁମେ ଏଇ ଉଭୟ ଉଗ୍ରବାଦକୁ ଚିହ୍ନିରଖିବ, ଯେପରିକି ସେଥିରୁ ପ୍ରଲୋଭନରୁ ନିଜକୁ ବଂଚେଇ ପାରିବ । ପରିଣତ ହେଲା ଉତାରୁ, ଯଥେଷ୍ଟ ଆତ୍ମ-ପ୍ରତ୍ୟୟ ଆସିଲା ପରେ ତୁମେ ବାଆଁକୁ ଅବା ଡାହାଣକୁ ଢଳିପାର, ଏବଂ ତଥାପି ତୁମର ସାହିତ୍ୟ ହୁଏତ ଲୋକପ୍ରିୟ ହୋଇପାରେ । କିନ୍ତୁ ମୂଳରୁ ମଝିବାଟର ଯଥାର୍ଥତା ବୁଝିରଖିଲେ ଭଲ ।

ଗୋଟିଏ ଦିଗର ଉଗ୍ରବାଦ ହେଲା କଠୋର ବୁଦ୍ଧିର ଏକାଧିପତ୍ୟ । କେତେକ ଆଧୁନିକ ଲେଖକ ବିଶ୍ୱାସ କରି ଆସିଛନ୍ତି ଯେ ସହଜ ଭାବ ତରଳତା (sentimentalism)ର ବିରୋଧ କରିବା ପାଇଁ ରେକ୍‌ଠୋକ୍ ବୌଦ୍ଧିକ ବିଶ୍ଳେଷଣ ନିତାନ୍ତ ଆବଶ୍ୟକ । ରଂଗ ନ ଥାଉ କି ରେଷ ନ ଥାଉ ସେଥିରେ । କୁହନ୍ତି ଯେ ଆତ୍ମଗତ ଅବା ପାରସ୍ପରିକ ତର୍କର ଚମତ୍କାରିତା ହିଁ କେତେ ରଂଗ ଦେଖାଇବ ତୁମକୁ, ମଣିଷଦଶାର ସତକଥା କହି ଶୋଇଲା ମନକୁ ଚିଆଁଇବ । ମୁଁ ସ୍ୱୀକାର କରୁଛି ଯେ ନୂଆ ନୂଆ ଲେଖିଲା ବେଳେ ମୁଁ ମଧ୍ୟ ଏହି ମର୍ମରେ ଚିଂତା କରୁଥିଲି । କିନ୍ତୁ ମୋତେ ଚେତାଇ ଦେଲେ ଗୋପୀବାବୁ । ଆମ ସମୟର ପୂର୍ବରୁ ଲେଖି ଆସୁଥିବା ଜଣେ ବିଶିଷ୍ଟ ଲେଖକଙ୍କର ଉଦାହରଣ ଦେଇ ମୋତେ ବୁଝେଇ ବସିଲେ ଯେ କେବଳ ବୁଦ୍ଧିର ଚମତ୍କାରିତା

ଯଥେଷ୍ଟ ନୁହେଁ । ଆବେଗକୁ ଚହଟେଇ ତା'ରି ବୌଦ୍ଧିକ ବର୍ଣ୍ଣମାଳା ପଢେଇଲେ ଯାଇଁ ସଚେତନ ପାଠକକୁ ମନଲାଖି ଖୋରାକ୍ ମିଳିବ । କହିଲେ ଦେଖନ୍ତୁ, ଅତିରଂଜନ ତଥା ଆବେଗକୁ ଭୟକରି ଅମୁକ ପ୍ରଚଣ୍ଡ ବୁଦ୍ଧିବାଦୀ କଥାକାର କିଭଳି ଶୁଷ୍କ ମନେହୁଅନ୍ତି । ବିଚାର ମାନିବାକୁ ଚାହାଁନ୍ତି ନାହିଁ ଯେ ବୁଦ୍ଧିମାନ୍ ଗାଳ୍ପିକ ସହଜେ ତାର୍କିକ ଅବା ଦାର୍ଶନିକ ହେଲେ ମଧ୍ୟ ରସିକ ପାଠକର ବୋଲକରା । ମୁଁ ବୁଝିଲି ଏବଂ ଆଜି ତା'ର ତର୍ଜମା କରି କହୁଛି ଯେ ରଂଗମାଟି ହେଲା ରସର ପିଣ୍ଡ, ଆବେଗକୁ କୁହ ପ୍ରାଣ । ଏହା ପରେ ଯାଇଁ ଆତ୍ମା । ଚିଂତାସାର ବକ୍ତବ୍ୟ । ତେଣୁ ସୁଦୃଶ୍ୟା ମୃଣ୍ମୟୀକୁ ଚିନ୍ମୟୀ କରି ଗଢିତୋଳିବା ହେଉଛି ବୁଦ୍ଧିବାଦୀ ଲେଖକର ଚାଲେଂଜ୍ । ଏବଂ ଏଇ ହେଉଛି କଳ୍ପିତ ସମ୍ଭବିତ "ସମ୍ପୂର୍ଣ୍ଣ ସତ୍ୟ"ର ବାଟ ।

ଅପରଦିଗର ଉଗ୍ରବାଦ ହେଲା ଆବେଗକୁ ଲମ୍ଫଦେଇ ନୟନମନକୁ ବିଂଧିଲା ପରି ରଂଗ ଓ ରେଖକୁ ଡାକି ଆଣିବା । ଯାହାକୁ ଅଲୌକିକ ବୋଲି କହି ହେବନାହିଁ, ଏକାବେଳେକେ ଅସମ୍ଭବ ବୋଲି ଦାବୀକରି ହେବ ନାହିଁ, କିନ୍ତୁ ମାନିବାକୁ ହେବ ଯେ ପ୍ରାୟ ନାଟକରେ ଅର୍ଥାତ୍ ପାରଂପରିକ ନାଟକରେ ହିଁ ଏମିତି ହୋଇଥାଏ । ଇଂରାଜୀରେ ଯାହାକୁ melodrama ବୋଲି କୁହନ୍ତି । ପ୍ରଶ୍ନ ହେଉଛି ଯେ କଥାସାହିତ୍ୟରେ ଏଭଳି ଉଗ୍ର ଉଜ୍ଜ୍ୱଳନକୁ ଦର୍ଶାଇବା ଉଚିତ ହେବ କି ? ମୋ ମତରେ ନୁହେଁ । ନାଟ୍ୟ ସାହିତ୍ୟରେ ତଥାକଥିତ ଆଶୁକ୍ରିୟାର ଦ୍ୱାହିଦେଇ ଯାହା ଦେଖାଇବାକୁ ପଡେ, ଗଳ୍ପସାହିତ୍ୟ କ'ଣ ସେହି "ଆବଶ୍ୟକତା"ରୁ ବିଚ୍ଛିନ୍ନ ହୋଇ ନାହିଁ ନା ହୋଇ ପାରିବ ନାହିଁ ? ବାସ୍ତବ ସାଧାରଣକୁ ମୁଠେଇ ଧରି ବିଚିତ୍ରବହୁଳ ଅସାଧାରଣର ଆଭାସ, ଅନ୍ତତଃପକ୍ଷେ ସମ୍ଭାବନା, ଆଣିଦେଇ ପାରିବ ନାହିଁ ? ଏବଂ ସେହି ଦୂରଦର୍ଶୀ ଦିଗନ୍ତଛୁଆଁ ସକ୍ଷଭଙ୍ଗିତା କ'ଣ ନାଟକୀୟତାଠାରୁ ଅଧିକ ଫଳପ୍ରଦ, ତେଣୁ ଶ୍ରେୟସ୍କର ନୁହେଁ ? ହଁ, ଆହୁରି ଖଣ୍ଡେ ବାଟ ଆଗେଇ ଯାଇ ତାକୁ ଫ୍ୟାଣ୍ଟାସି କିଂବା ଅଧାବାସ୍ତବ ଏବଂ ଅଧାଫ୍ୟାଣ୍ଟାସିର ଖେଚଡ଼ି କରିଦେଇ ପାର, ଯେମିତିକି ପାଠକ ବୁଝିବ ଯେ ଇଏ ହେଉଛି ଛଳକଥା, ଅତି ବାସ୍ତବର ପ୍ରତୀକ ଏବଂ ଏଇ ପ୍ରତୀକରୁ ଅନେକ ଖିଅ ବାହାର କରିବାର ସୁବିଧା ମିଳିବ । ଅଥବା ଭାବିବ ଯେ ଇଏ ବି ଗୋଟାଏ ଢଂଗ, ସିଧାସଳଖ କଥାକୁହାର ବ୍ୟତିକ୍ରମ, ଏକ ଭିନ୍ନ ସ୍ୱାଦୁ ଚଖେଇବା ପାଇଁ । କିଂତୁ ଏଭଳି କଥାକୁହାକୁ ମଧ୍ୟ ଅଭ୍ୟାସଗତ କରି ବସିଲେ ବିପଦ । କାରଣ ତା'ହେଲେ ମନେହେବ ଯେ ପ୍ରାପ୍ତ ବୟସର ସିଧାସଳଖପଣ ଜଣା ନାହିଁ ତୁମକୁ । କିମ୍ବା ତୁମେ ପ୍ରାପ୍ତବୟସର ବାସ୍ତବ, ଅର୍ଥାତ୍ ନିଷ୍ଠୁର ବାସ୍ତବର ଅନିବାର୍ଯ୍ୟ କଂଦଳକୁ ଡରୁଛ । ସେଇଲାଗି ଏଇ ବୁଲାଣିଆ

ପିଲଙ୍କିଆପଣର କାରସାଦି । ଏଭଳି ଭ୍ରମର ଶିକାର ହେବାକୁ କ'ଣ ଭଲଲାଗିବ ତୁମକୁ ?

କଂଦଳ କ'ଣ ରହିବାକୁ ବାଧ୍ୟ ? କଦଂଳ ନ ଥିଲେ କ'ଣ କ୍ଲାଇମାକ୍ସ୍ ଆସିବ ନାହିଁ ? ଆସନ୍ତା କିସ୍ତିରେ ଏଇ କୋଡୋଟି ପ୍ରଶ୍ନର ଆଲୋଚନା କରିବା । ସେଇଠୁଁ କଥାସାହିତ୍ୟର ତୃତୀୟ ମୌଳିକ ଦାବୀର ବିଗ୍ରର କରିବାକୁ ହେବ । ଯେ "ଆନର ଚେତନାରେ ଭବଭବନାର 'ନୂଆ' ଅଥିତିଟିଏ ପହୁଂଚେଇବାକୁ ହେବ । ଅର୍ଥାତ୍ ତୁମକୁ କିଛି ନୂଆ କଥା କହିବାକୁ ହେବ...... "। ତା'ପରେ ଭଯେ ଭଯେ ବିଦାୟ ନେବାର ପାଳି ।

( ୧୧ )

ଘଟଣା-ଚରିତ୍ର-ପରିବେଶର ସଂଯୋଜନାରେ କିଛି ଝଟାପଟା ନ ରହିଲେ କ'ଣ ଚଳିବ ନାହିଁ ? ସେତିକି ନ ଥିଲେ ମିଛ ଅବା ସତ-ମିଛ ସଂପୂର୍ଣ୍ଣ ସତ ପରି ମନେ-ହେବ ନାହିଁ, ଏଭଳି ହିଂସାମୂଳକ ଥିଓରିକୁ ମୁଁ ଗ୍ରହଣ କରି ପାରିବି ନାହିଁ, ଯେହେତୁ ମୁଁ ବିଶ୍ୱାସ କରେ ଯେ ହିଁସାରୁ ବଳି ଅହିଂସା, ଅଶାଂତିରୁ ବଳି ଶାଂତି, ବୈଷମ୍ୟରୁ ବଳି ସାମ୍ୟ ହିଁ ସୃଷ୍ଟିର ଅଂତର୍ନିହିତ ଏବଂ ଗଭୀରତମ ସତ୍ୟ । ହେଗେଲ୍, ମାର୍କସ୍ ଆଦି ପଣ୍ଡିତମାନେ ଅବଶ୍ୟ କହିଗଲେ ଯେ ଜନଚେତନାର ବିପଣୀରେ ଓଜନିଆ କଥାଟିଏ, ଭବଟିଏ, ତତ୍ତ୍ୱଟିଏ ଆସି ପହୁଂଚିଲା ମାତ୍ରେ ତା'ର ଶତ୍ରୁମାନେ ଜନ୍ମହେବେ, ଏବଂ ଯଥାକ୍ରମେ ଉଭୟପକ୍ଷର ଘାତପ୍ରତିଘାତ, ହୁଏତ ରକ୍ତାକ୍ତ ସଂଗ୍ରାମ ଦେଖିବାକୁ ମିଳିବ, ତା'ପରେ ଯାଇଁ ସମନ୍ୱିତ ନୂଆ ବସ୍ତୁଟିର ଆବିର୍ଭାବ ହେବ, ନୂଆ ଶତ୍ରୁ ଉପୁଜିବା ଯାଏଁ । କିନ୍ତୁ ଏହି ଥିସିସ୍-ଆଣ୍ଟିଥିସିସ୍ ସିନ୍ଥିସିସ୍‌ର ତଥ୍ୟକୁ ଆମେ (ବିଶେଷତଃ ଆଧ୍ୟାତ୍ମିକ ଭରତବାସୀ) ଗ୍ରହଣ କରିନେବୁ ଆମ ସାହିତ୍ୟ ପାଇଁ, ଏହି ନିର୍ଦ୍ଦେଶ କାହିଁକି କିଏ ଲଦିଦେବ ଆମ ଉପରେ ?

କେହି କେହି ଏହିପ୍ରକାର ଦାର୍ଶନିକତାର ଦ୍ୱାହିଦେଇ ବିଦ୍ରୋହର ସ୍ୱର ଉଠାଇ ପାରନ୍ତି । ଆଉ କେତେକ ସ୍ପର୍ଦ୍ଧାବାଦୀ ଅବା ଶାଂତିପ୍ରିୟ ଭଇ-ଭଉଣୀ "କାରିଗରି"ର ପରିପ୍ରେକ୍ଷୀରେ ଦାବୀକରି ପାରନ୍ତି ଯେ କଂଦଳ ଥିଲେ ଯାଇଁ କ୍ଲାଇମାକ୍ସ୍‌ର ଶେଷ-କଥା ଝଲସି ଉଠିବ, ଏଥିରେ କୌଣସି ଯୁକ୍ତି ନାହିଁ । ସେମାନେ ହୁଏତ ମୁଇଁ କହିଛି

ବୋଲି ମନେପକାଇ ଦେଇ ପାରନ୍ତି, ଯେ ଆରମ୍ଭ ଶେଷର ଦ୍ୱୈତ ହିଁ ଯଥେଷ୍ଟ ମଧ୍ୟ ଦେଶୀୟ ଗଣ୍ଡଗୋଳ ଥାଉ ବା ନ ଥାଉ । ଯେ ଉନ୍ମୋଚନ ଅବା ଅନବଗୁଣ୍ଠନ ମଧ୍ୟ ଏକ ପରୀକ୍ଷିତ କଳାତ୍ମକ ପ୍ରକ୍ରିୟା, ଯାହାର ମାଧ୍ୟମରେ ଗୋଲେଇର ଅନୁଭବ ମିଳିବ । ଇତ୍ୟାଦି ।

ଅବଶ୍ୟ ମୁଁ କେଉଁ ବ୍ୟକ୍ତିଗତ ଅହିଂସାବାଦୀ ଦର୍ଶନର ଅବମାନନା କରିବାକୁ ଚାହେଁ ନାହିଁ । ମୁଁ ମଧ୍ୟ ସ୍ୱୀକାର କରୁଛି ଯେ ଘଟଣା-ଚରିତ୍ର-ପରିବେଶର ସଂଯୋଜନା ଅର୍ଥାତ୍ ପ୍ଲଟ୍‌ରେ କଂଦଳ ଅତ୍ୟାବଶ୍ୟକ ନୁହେଁ । ତେବେ ମୁଁ ଚେତାଇଦେବାକୁ ଚାହେଁ ଯେ (୧) ସାଧାରଣତଃ କଂଦଳ (ପ୍ରତ୍ୟକ୍ଷରେ ହେଉ ଅବା ପରୋକ୍ଷରେ) ଆଣିଦେଇ ପାରିଲେ ତାଡି ସହଜରେ ମିଳିଯିବ ତୁମକୁ, ତାଡିରୁ ରଂଗ ଓ ରେଷର ବାଟ ଫିଟିଯିବ, ଯାହାକି ପାଠକକୁ ତା'ର "ସଂପୂର୍ଣ୍ଣ ସତ" ଆଡ଼କୁ ନେଇ ଯିବାରେ ସାହାଯ୍ୟ କରିବ । ଏଇ ସୁପରୀକ୍ଷିତ ପଂଥାର ଅନୁସରଣ ନ କଲେ ମଧ୍ୟ ସାର୍ଥକ ଗପ ଲେଖାଯାଇ ପାରିବ, ଯଥା ଉପରୋକ୍ତ ଉନ୍ମୋଚନ ବିଧି । କିନ୍ତୁ ସେଥିରେ ସଫଳତା ପାଇଁ ସୂକ୍ଷ୍ମ ଏବଂ ଚଳମାନ ଭଷ୍ଟର୍ଯ୍ୟର ଆବଶ୍ୟକ । ପ୍ରକାରନ୍ତରେ ସ୍ଥାଣୁ, କିଂତୁ ଅଜାଣତରେ ଦୂରରୁ ଦୂରକୁ ଟାଣିନେଇ ପାରିବାର କାରସାଦି । ଯାହା ତୁମର ନିଜସ୍ୱ ପ୍ରବଣତା ଛଡ଼ା ଯଥେଷ୍ଟ ଅଭ୍ୟାସ ଓ ଅଧ୍ୟବସାୟ ଉପରେ ନିର୍ଭର କରେ । ନହେଲେ ପାଠକ ତା'ର ସମତୁଲ ଅଣଗତିରେ ଢୁଳେଇ ପଡ଼ିବା ଅସଂଭବ ନୁହେଁ । (୨) କଂଦଳକୁ ଦୂରେଇ ଦେଲେ ଚଳିବ, କିଂତୁ ସଂଘର୍ଷକୁ ନୁହେଁ । ଏଇଠି ମୁଁ ମଧ୍ୟ ଦର୍ଶନର ଭିତ୍ତିଭୂମିରେ ଠିଆ ହୋଇ ସ୍ପଷ୍ଟଭାବରେ କହିବାକୁ ଚାହେଁ ଯେ କର୍ମଗତ, ଭାବଗତ, ଅବା ଭାବନାଗତ ଯେକୌଣସି "ଜୀଅନ୍ତାପଣ"ରେ ସଂଘର୍ଷ ଅନିବାର୍ଯ୍ୟ । ଏଇ ସଂଘର୍ଷରେ ହିଂସା ନ ଥାଇ ପାରେ (ଯଦିଓ ତାତ୍ତ୍ୱିକଦୃଷ୍ଟିରେ କହିଲେ ଭୁଲ୍‌ହେବ ନାହିଁ ଯେ ସଂଘର୍ଷର ଅନ୍ୟ ନାମ ହେଉଛି ଜୀବନ-ବନାମ-ମୃତ୍ୟୁର ପାରସ୍ପରିକ ହିଂସା), କିନ୍ତୁ ବିରୋଧର ଘାତ-ପ୍ରତିଘାତ ଏବଂ ତତ୍‌ଜନିତ ଉତ୍ତେଜନା ରହିବାକୁ ବାଧ୍ୟ । ପୂର୍ବବର୍ଣ୍ଣିତ "ମୁଣ୍ଡିଆ" ପରି ଚରିତ୍ରପ୍ରଧାନ ଏବଂ ଉନ୍ମୋଚନମୂଳକ ଗଳ୍ପରେ ମଧ୍ୟ ତା'ର ସତ୍ତା ସୁଦୃଶ୍ୟ, ତାହା ଯେତେ ବଂକାଢ଼ଂକା ଅବା ବୁଲଣିଆ ହେଉ ନା କାହିଁକି । ଯେଉଁ ଗଳ୍ପରେ ସଂଘର୍ଷର ସତ୍ତା ନାହିଁ, ସେଥିରେ ହୁଏତ ଥିବ ଅଜ୍ଞାନର ଅବା ଜ୍ଞାନୋପଲବ୍‌ଧିର ଅବୀଚି, କିନ୍ତୁ ସାହିତ୍ୟର ଗୁଣହେଲା ସକ୍ରିୟତା, ଜୀଅନ୍ତାପଣର ବୀଚି, ସତ୍ତ୍ୱ ଓ ତମସ୍‌ର ମଝିରେ ଥିବା ଲହଡ଼ିଭଂଗାର ସଂଘର୍ଷ । ତେଣୁ ମୋର ଅନୁରୋଧ, ତୁମେ ଶାନ୍ତିପ୍ରିୟ-ତାର ସଫେଇ ଦେଇ ନିଶ୍ଚେଷ୍ଟତାର ପାଲରେ ପଡ଼ ନାହିଁ, ଚେଷ୍ଟାକରି ତୁମ ଭିତରେ

ଓ ବାହାରେ ଘଟୁଥିବା ବିବିଧ-ବିଚିତ୍ର ସଂଘର୍ଷକୁ ଦେଖ, ଚିହ୍ନ, ଏବଂ ଜୀବଦଶାର ଏକ ପ୍ରଧାନ ସତ୍ୟ ହୋଇଥିବାରୁ ସେଇ ହେଉ ତୁମ କଥାକୁହାର ବିଶିଷ୍ଟ କାରଣ । ସେଣିକି ତାକୁ ବଢ଼େଇ ଚଢ଼େଇ କଂଦଳର ପର୍ଯ୍ୟାୟକୁ ନେବ କି ନାହିଁ, ତା'ର ବିଚାର କରିପାର ଠିକଣା ସମୟରେ—କଥାବସ୍ତୁର ଦାବିଦା ଓ ତୁମର ଅଭିରୁଚି ଅନୁଯାୟୀ ।

ବାସ୍ତବ ଅନୁଭୂତି (ନିରୀକ୍ଷଣ ଓ କଳ୍ପନା ସମେତ) ରୁ ଯାହାକିଛି ମିଳିବ ତାକୁ କ'ଣ ତୁମେ ଆଦରି ନେଇପାରିବ ତୁମ ସୃଷ୍ଟି ପାଇଁ ? ପ୍ରଥମେ ମନେହେବ—ମଲା, ଏଥିରେ ପଚାରିବାର କଅଣ ଅଛି ? କିନ୍ତୁ ଏଇଠି ମୁଁ ତୁମକୁ ଟିକିଏ ସାବଧାନ କରି ଦେବାକୁ ଚାହେଁ । କାରଣ ମୁଁ ଜାଣେ ନାହିଁ ତୁମର ଅନୁଭୂତି-ପ୍ରବଣତା କେତେ ଗଭୀର ଓ ପ୍ରଖର ଏବଂ ତୁମର ସାହସ କେତେ ବଳିଷ୍ଠ । ଉଭୟ ଦିଗରେ ତୁମେ ସାଧାରଣ ସ୍ତରର ଉର୍ଦ୍ଧ୍ୱରେ ରହିପାରିଲେ ଆନଂଦର ବିଷୟ । ତା'ହେଲେ ତୁମେ କେବଳ ଆଜି ପାଇଁ ନ ଲେଖି, ହୁଏତ ଆଜିକୁ ହେୟଜ୍ଞାନ କରି, ଭବିଷ୍ୟତର ଆବାହକ ହୋଇପାରିବ, ଯାହାକି ପ୍ରତ୍ୟେକ କଳାକାରର କାମ୍ୟ । କିନ୍ତୁ ଯଦି ତୁମେ ତୁମ ଦିବ୍ୟ ଚକ୍ଷୁରେ ଯାହା ଦେଖିପାରୁଛ, ତାହା ବୁଦ୍ଧିବାଦୀ ମୁଷ୍ଟିମେୟର ଅନୁଭବକୁ ମଧ୍ୟ ଛୁଇଁ ପାରୁନାହିଁ, ଅବା ତାଙ୍କ ସତକୁ ସହିନେବାର ଏରୁଣ୍ଡିବଂଧକୁ ଟପିଗଲା ପରି ଲାଗୁଛି—ତା'ହେଲେ ? ଆଜିର ସଂସାର ତୁମକୁ ଅଳ୍ପବହୁତ ଗ୍ରହଣ କଲେ ସିନା ତୁମେ ଭବିଷ୍ୟତକୁ ପାଦ ବଢ଼େଇବ ! ମୁଁ ବିଶ୍ୱାସ କରେ ଯେ ପ୍ରତ୍ୟେକ ସାର୍ଥକ ଲେଖକ ଏକ ସଂଖ୍ୟା-ଲଘୁ ସଂପ୍ରଦାୟର ସଭ୍ୟ ହେବାକୁ ବାଧ୍ୟ । କିନ୍ତୁ ଏଇ ସଂଖ୍ୟାଲଘୁତା ଏତେ ଦୂରକୁ ନ ଯାଉ ଯେ ମନେହେବ ଅନ୍ୟମାନେ ସମସ୍ତେ ଲୁଗା ପିଂଧିଛନ୍ତି (ଏଇ ଦେଖାସୁଂଦର ଝିନବାସକୁ ଧିକ୍ !), ଖାଲି ତୁମେ ଏକା ନଗ୍ନ, ତେଣୁ ଅଶ୍ଳୀଳ ଏବଂ ତୁମକୁ ସଭା ଛାଡ଼ି ଚାଲିଯିବାକୁ ପଡ଼ିବ ।

ଏଥିର ଦୁଇଟି ଦିଗ । ଗୋଟିଏ ହେଲା ବିଂଶ୍ଳେଷଣମୂଳକ ଗଭୀର ଚିଂତା ମାଧ୍ୟମରେ ଚେତନ ତଥା ଅବଚେତନର ବିଭିନ୍ନ ରୂପ-ବିରୂପକୁ ଚିହ୍ନି ପାରିବା । ଚିହ୍ନିଲାରୁ ସେଥିର ଅତି-ନିର୍ମମ ଏବଂ ଅତି—କୁତ୍ସିତ ସତ୍ୟଗୁଡ଼ିକୁ ନେଇ ତ୍ରସ୍ତଚକିତ ହୋଇ ଏଗୁଡ଼ାକୁ ପଦାରେ ପକେଇବି କି ଲୁଚେଇ ଦେବି ବୋଲି କାଂଦିବା, ରାଗିବା, ଭଗବାନ୍ ମୋତେ କାହିଁକି ଏଇ ହଟହଟାରେ ପକେଇଲେ ବୋଲି ହାତଗୋଡ଼ କଚାଡ଼ି ହେବା । ସତ୍ୟନିଷ୍ଠ ଲେଖକର ଏଭଳି ଦୁରବସ୍ଥା ବିରଳ ନୁହେଁ । ଜଣେ ପାଠକ-ସମୀକ୍ଷକ ପରିହାସ କଲାପରି କହିଛନ୍ତି ଯେ ଟଲ୍‌ଷ୍ଟୟଙ୍କ ଆଖିଦୁଇଟା ଏତେ ଉଜ୍ଜ୍ୱଳ ଯେ

ସେ ସତ୍ୟାସତ୍ୟମାନଙ୍କୁ ଅଧିକରୁ ଉଚିତ ଚିନ୍ତି ପକାଇଲେ । ଚିନ୍ତାଗରୁ ନିଜେ "ଅନ୍ଧ" ହୋଇଗଲେ, ବୁଢା ବୟସରେ କହି ବୁଲିଲେ ଯେ ମୁଁ ଯାହା ଲେଖିଗଲି ସବୁ ଭୁଲ୍ । ନୀଟ୍‌ସେ ବିଚାର ଏତେ ଗହୀରକୁ ଚାଲିଗଲେ। ଯେ ତାଙ୍କର ରଜ୍ଜୁ କଟିଗଲା ବହିର୍ଜଗତ୍ ସାଂଗରେ ଏବଂ ସେ ପାଗଳ ହୋଇଗଲେ । କାମୁ୍ୟ ଘୋଷଣା କଲେ ଯେ ଆତ୍ମହତ୍ୟା କରିବା ପ୍ରତ୍ୟେକ ଅନୁଭବୀର ଦର୍ଶନସିଦ୍ଧ ଅଧିକାର । ଏମାନଙ୍କ ସତ୍ୟନିଷ୍ଠାକୁ ଧନ୍ୟ କହିବା ! କିଂତୁ ଆମେ ରକ୍ଷଣଶୀଳ ଭାରତବର୍ଷ ପୁଣି ରକ୍ଷଣଶୀଳତାର ଯଥେଷ୍ଟ ନିମ୍ନ (ଅବା ଉଚ୍ଚ) ସ୍ତରରେ ଥିବା ଓଡ଼ିଶାର ଲେଖକମାନେ ତାଙ୍କପରି ଉଗ୍ରବାଦୀ ହୋଇ ପାରିବା କି ? ମୋର ମନେପଡୁଛି ଯେ ମୋର ପ୍ରାୟ ତିରିଶ ବର୍ଷ ତଳର "ଭଂଗା ଖେଳଣା"ଯାହାକୁ ଆଧୁନିକ ଓଡ଼ିଆ ସାହିତ୍ୟର ଅନ୍ୟତମ ଦିଗବାରେଣୀ ବୋଲି କୁହାଯାଏ, ତାକୁ ପଢି ସେତେବେଳର କେତେକ ପାଠକ-ସମୀକ୍ଷକ କହିଲେ—ମାଆ-ମାନେ କ'ଣ ଅକାରଣରେ ଏଭଳି ଦୁଶ୍ଚରିତ୍ର ହୋଇ ପାରନ୍ତି ? ସୁଖର ବିଷୟ ଯେ ଏଇ ତିରିଶ ବର୍ଷ ଭିତରେ "ସତକୁ ସହିନେବାର ଏରୁଣ୍ଡିବଂଧ" କିଛିଟା ଉପରକୁ ଉଠିଗଲାଣି, ତେଣୁ ସେମାନଙ୍କ ନୀତିବୁଦ୍ଧିର ଜଳାଶୟରେ ଆହୁରି କିଛି ନିର୍ମଳ ଜଳ ହୁଏତ ଜମିଯାଇ ପାରିବ । କିନ୍ତୁ ମାନିବାକୁ ପଡ଼ିବ ଯେ ଆମର ଏଇ ଏରୁଣ୍ଡିବଂଧ ଅନ୍ୟ ଦେଶ ଓ ଅଂଚଳ ତୁଳନାରେ ଅନେକ ସାନ ଓ ଦୁର୍ବଳ । ଭୟ ହେଉଛି କେତେ-ବେଳେ ସେମାନେ ପାଟିକରି ଉଠିବେ—ଗଲା, ଗଲା, ବୁଡ଼ିଗଲା, ନଷ୍ଟ ହୋଇଗଲା...। ଅତଏବ ଶନୈଃ ଶନୈଃ ଅଗ୍ରସର ହେବା ବୁଦ୍ଧିମାନର କାର୍ଯ୍ୟ ନୁହେଁ କି ? ତା'ଛଡ଼ା ଆଉ ଗୋଟିଏ କଥା ମନେରଖିଲେ ଭଲ । ତୁମ ଦିବ୍ୟ ଚକ୍ଷୁରେ ଧରା ପଡ଼ିଥିବା ବାସ୍ତବ ସତ କୋଉ ଶାଶ୍ୱତ ସତ ହୋଇଛି ଯେ ତୁମେ ଏମିତି ବ୍ୟସ୍ତହୋଇ ଉଠିବ ? ଯେତେହେଲେ ତାହା ହେଉଛି ତୁମର ଅନୁଭୂତ ସତ୍ୟ, ତେଣୁ ଆଂଶିକ ଏବଂ ସନ୍ଦି-ଗ୍ଧ । ତେଣୁ ଦେଖାଇ ହେଉ ନାହିଁ ବୋଲି ଏମିତି କାଂଦିବ ରାଗିବ କାହିଁକି ? ମୁଁ ବି' ସେମିତି ବ୍ୟସ୍ତ ହେଉଥିଲି ଦିନେ, କିଂତୁ ଆଜି ଏଇ ଦାର୍ଶନିକତା ହିଁ ମୋତେ ସାଂତ୍ୱନା ଦେଉଛି । ଏବଂ କହୁଛି ଯେ ବେଳ ଅଛି, ତୋ'ପଛକୁ ଅନ୍ୟମାନେ ଅଛନ୍ତି, ଅସରନ୍ତି ଏଇ ସତ୍ୟ-ଉନ୍ମୋଚନର ପାଳ......

ଦ୍ୱିତୀୟ ବିପଜ୍ଜନକ ଦିଗହେଲା ଚେତନାର ଉଡ୍‌ଡ୍ୟୟନ । ଅତି ଚେତନାର ସ୍ପର୍ଶ । ଲେଖକ ହୋଇଛ ବୋଲି ତୁମେ ଏଇ ସ୍ପର୍ଶରୁ ରକ୍ଷା ପାଇଯିବ ବୋଲି କିଏ କହିଲା ? ବିବେକାନଂଦଙ୍କ ଭାଷାରେ ମଣିଷର ସାଧାରଣ ଚେତନା ପାତଳ ଚାଦରଟିଏ ତା' ଉପରକୁ ଅତି ଚେତନାର ମହାକାଶ, ତଳକୁ ଅବଚେତନର ପାତାଳପୁରୀ । କୁଣ୍ଡ

ପାଉନାହିଁ କି ସହଜେ ପାଇବ ନାହିଁ, ହେଲେ ଆମେ ଉଭୟକୁ ଛୁଇଁବାର, ଚିହ୍ନିବାର, ଏବଂ ଅନୁଭବକୁ ଦର୍ଶାଇବାର ଅଧିକାରୀ । ବୌଦ୍ଧିକ ବିଶ୍ଳେଷଣ ସାହାଯ୍ୟରେ ତାଙ୍କୁ ଯେମିତି ଅନେଇ ହେବ, ଆକାଶକୁ ମଧ୍ୟ ସେମିତି ଉଡ଼ିଯାଇ ହେବ ଅନୁଭବର ଢଳିଆରେ । କିଂତୁ କେତେବେଳେ କେମିତି, ହୁଏତ ମୁହୂର୍ତ୍ତକ ପାଇଁ । ଉପଲବ୍ଧିର ସାମାନ୍ୟତମ ଆଭାସ, ଯାହାକୁ ଧରି ରଖି ପାରିଲେ ଜୀବଦଶାକୁ ନେଇ ଅଂକ କଷି-ବାର ଏଇ ହୋମ୍‌ଓ୍ୱାର୍କ, ଅର୍ଥାତ୍ ସାହିତ୍ୟ ମଧ୍ୟ ଅକାରଣ ମନେହେବ । ବର୍ତ୍ତମାନ ପ୍ରଶ୍ନ ହେଲା ଯେ ଯଦି ଜଣେ କଥାକାର ସେଇଭଳି ଅନୁଭବ ପାଇଲା ଥରକୁ ଥର ଏବଂ ଘନିଷ୍ଠଭାବରେ, ତାକୁ ସେ ତା' ସାହିତ୍ୟ ଭିତରକୁ ଆଣିବ କି ନାହିଁ ? ଏଥିରେ ମଧ୍ୟ "ଏଗ୍ରୁଣ୍ଡିବିଂଧ"ର ଭୂମିକା ଅଛି କି ନାହିଁ ? ଅବଶ୍ୟ ଅଛି, କିଂତୁ ଭିନ୍ନ ଧରଣର, ପାଠକେ ବିଶ୍ୱାସ କରି ପାରିବାର ବଂଧ । ତେବେ ମୁଁ କହିବି ଯେ ଏଗ୍ରୁଣ୍ଡିବିଂଧକୁ ପରୁଆ କରନାହିଁ, ଯେତିକି ଦେଖାଇ ପାରିବ ଦେଖାଅ । ଅଂତତଃ ତୁମର ମହାର୍ଘ ବ୍ୟାକୁଳତାଟି ଆଉ କାହା ପାଖରେ ପହୁଂଚି ପାରିଲେ ସେଇ ଲକ୍ଷେ ଟଂକା । ଜଣେ ବିଶିଷ୍ଟ ସମୀକ୍ଷକ ଜେ. ପି. ଷ୍ଟର୍ଣ୍ଣ କହିଛନ୍ତି ଯେ ସାହିତ୍ୟ ଆଧ୍ୟାତ୍ମିକତାର ପ୍ରତିକୂଳ ନ ହେଲେ ମଧ୍ୟ ଆଧ୍ୟାତ୍ମିକ ଅନୁଭବକୁ ଦର୍ଶାଇବା ସାହିତ୍ୟଇଲାକାର ବାହାରେ, କାରଣ "ଗୁହା"ରେ ପଶିଥିବା ଲୋକଙ୍କ ପାଇଁ ତା'ର ଝଲକଟିଏ ଅବା ତା' ଛାଇ-ଆଲୁଅର ନାଚ ହିଁ ଯଥେଷ୍ଟ । ସେତିକି ତାଙ୍କ ପାଉଣା; ତା'ଠୁଁ ଅଧିକ ନୁହେଁ । ସ୍ୱଭାବତଃ ମୁଁ ତାଙ୍କ ହୁକୁମ ମାନିବାକୁ ପ୍ରସ୍ତୁତ ନୁହେଁ । ମଣିଷ ହିସାବରେ ଗୁହାରୁ ମୁକୁଳି ଆସିବା ହିଁ ମୋର ଲକ୍ଷ୍ୟ, ତେଣୁ ମୁଁ ଯାହା ପାଇଛି ଯେତିକି ପାଇଛି ତାକୁ ଦର୍ଶାଇବା ମୋର କର୍ତ୍ତବ୍ୟ, ନିଜପାଇଁ ତଥା ମୋ ଜାତି ଭାଇଙ୍କ ପାଇଁ । କିଂତୁ ଦୁଃଖର ସହିତ ମୋତେ ସ୍ୱୀକାର କରିବାକୁ ପଡ଼ୁଛି ଯେ ଯେତେ ବହପ ଦେଖେଇଲେ ମଧ୍ୟ ମୋର ଅନୁଭୂତ ଆଧ୍ୟାତ୍ମିକତାକୁ ସାହିତ୍ୟରେ ଦର୍ଶାଇ ପାରିବି କେବଳ ତୁମ ଆମ ନିଚ୍ଛୁଣା ସିନ୍ଦୁବାଦ୍ ଯାଏଁ—ଟିକିଏ ବ୍ୟାକୁଳତା, ଉନ୍ମେଷ ଅବା ଅର୍ଦ୍ଧ-ଉଚାରଣ । ସେଣିକି ନୁହେଁ । ସେଣିକି ଥିବ ଶଠତା, ଭାଷଣବାଜି । ଅବା ଉପଲବ୍ଧିଗତ ନିଗଟ ଅକ୍ଷମତା । ରାମକୃଷ୍ଣ ପରମହଂସ କହିଲା ପରି, ଲୁଣ ଯାଇଥିଲା ସମୁଦ୍ରକୁ ଦେଖି ପରଖି ସେ ବିଷୟରେ କିଛି କହିବା ପାଇଁ, କିଂତୁ ତାକୁ ଛୁଉଁ ନ ଛୁଉଁଣୁ ବିଚରା ନିଜେ ମିଳେଇଗଲା !

ବାସ୍ତବ ସତକୁ ଦର୍ଶାଇବାରେ କେତେଦୂର ଯିବ ଓ ଯାଇପାରିବ, ତା'ର ଭଲ ମନ୍ଦ ଖାଲ ଢିପ ବିଷୟରେ କିଛି କହିଗଲି ବୟସ ଓ ଅଭିଜ୍ଞତାର ତଥାକଥିତ ଅଧିକାର

ନେଇ । ସେଣିକି ତୁମେ ତୁମ ଅନୁଭୂତିର ପୁଂଜିକୁ ନେଇ କେତେଦୂର ଯିବ, ତା ତୁମେ ଜାଣିଥିବ । କିଂତୁ ସାହସରୁ ବଳି ସଚୋଟପଣ ହିଁ ତୁମର ସହାୟକ ହେଉ, ଏତିକି ମୋର ପ୍ରାର୍ଥନା ।

ସତମିଛ ହୁଂଦରର ଶେଷକଥା ହେଲା ପୂର୍ବରୁ କୁହାଯାଇଥିବା "ଶେଷକଥା" । କ୍ଲାଇମାକ୍ସ୍ । ତୃତୀୟ କିସ୍ତିରେ ଯେଉଁ ବାକ୍ୟଟିଏ ଗଢିଥିଲି ତା'ର ସୂଚନା ଦେବା ପାଇଁ ତାକୁ ଦୋହରେଇଲେ ଭଲହେବ ପର । କହିଥିଲି -"ସେଥିରେ କଥାଟାକୁ ଛିଣ୍ଡେଇ ଦେଲାପରି ପରିଣତି ନ ଥିଲେ ନାହିଁ, ଥିବ ଏକ ଆବିଷ୍କାର, ଆଲୋକଦର୍ଶନ ନ ଥିଲେ ନାହିଁ, ଥିବ ଏକ ଉଜ୍ଜ୍ୱଳନ; ବିଜ୍ଞପ୍ତି ନ ଥିଲେ ନାହିଁ, ଥିବ ଏକ ବାର୍ତ୍ତା, ପ୍ରଗଲ୍ଭ ପ୍ରଶ୍ନୋତ୍ତରିତା, ଚିଂତାକୁ ଚିଆଇଁବା ପାଇଁ ।" ଏହାର ବ୍ୟାଖ୍ୟା ଅନାବଶ୍ୟକ । ତେବେ ଏଦିଗରେ କେତୋଟି ସ୍ପଷ୍ଟୀକରଣ ସମୀଚୀନ ହେବବୋଲି ମନେକରୁଛି ।

ପ୍ରଥମ କଥା ହେଲା ଯେ ଶେଷୋକ୍ତି ଗପର ଠିକ୍ ଶେଷକୁ ରହିବ ବୋଲି ଲେଖା ହୋଇ ନାହିଁ । ଶୀର୍ଷରେ ପହୁଂଚିବାର ସୁଖାନୁଭବ ପରେ କ'ଣ ଟିକିଏ ଅଳସେଇ ହେବାକୁ ମନା ? ନା ଟିକିଏ ଫାଜିଲାମି କଲେ, ପାଠକକୁ ଭୁଡେଇଲା ପରି ଖେଳ ଖେଳିଲେ ସୁଖର ମହତ୍ତ୍ୱ ଊଣା ହୋଇଯିବ ? ବରଂ ମୁଣ୍ଡି ମରିଲା ପରେ ଲଘୁତା ଅବା ଶ୍ଳେଷର ଲଂଜ ଟାଣିଦେଲେ ପାଠକକୁ ଅଧିକ ଭଲଲାଗିପାରେ—ତତ୍ତ୍ୱଗ୍ରହଣର ଦାୟିତ୍ୱରୁ ଖସିଗଲା ପରି ! ଖାଲି ଏତିକି ମନେଥାଉ ଯେ ଗପରେ ଏକାଧିକ ଆବିଷ୍କାର ଏକାଧିକ ଉଜ୍ଜ୍ୱଳନର ଅବକାଶ ନାହିଁ । ଉପନ୍ୟାସରେ ରହିଲେ ଚଳିବ, ଯେଉଁଠି ଏକାଧିକ ଚରିତ୍ର ନିଜ ନିଜ ପୂର୍ଣ୍ଣପ୍ରଭ ଦାବୀକରି ବସିବା ସ୍ୱାଭବିକ ।

ଏଇଠି ଅତ୍ୟାଧୁନିକ ପାଠକ ପଗ୍ଚରିପାରେ—କ୍ଲାଇମାକ୍ସ କ୍ଲାଇମାକ୍ସ୍ ବୋଲି ହୁରି ପଡ଼ିଛି କାହିଁକି ? ଆପଣଙ୍କୁ କ'ଣ ଜଣା ନାହିଁ ଯେ ଇଏ ହେଉଛି ଆଣ୍ଟି-କ୍ଲାଇମାକ୍ସ୍ର ଯୁଗ ? ଆଣ୍ଟି-ହିରୋକୁ କେବଳ ଆଣ୍ଟି-କ୍ଲାଇମାକ୍ସ୍ ହିଁ ଶୋଭାପାଏ ବୋଲି ଭବୁନାହାନ୍ତି ଆପଣ ?

ତେଣୁ ଏହି "ଆଣ୍ଟି" ଅର୍ଥାତ୍ କାବ୍ୟିକ ଓଲଟାପଣ ବିଷୟରେ କିଛି କହି-ବାକୁ ପଡୁଛି, ଯଦିଓ ଏହାର ହାଉଆ ବିଶେଷଭବରେ ଆସି ନାହିଁ ଆମ ଅଂଚଳକୁ । ଆମ ଦେଶର କାବ୍ୟାଦର୍ଶ ହେଲା ଅଂତିମରେ ସୁଖ । ସୁଖରୁ ବଳି ଆନନ୍ଦ, ତଦୂର୍ଦ୍ଧ୍ୱରେ ଅମୃତ । ମର୍ତ୍ତ୍ୟରେ ନ ହେଲେ ମଧ୍ୟ ସ୍ୱର୍ଗରେ । ପାଶ୍ଚାତ୍ୟ ଦେଶରେ ମଧ୍ୟ "ଶେଷକୁ ସୁଖ"ର ଚ୍ଛହିଦା ଥିଲା ଏବଂ ସାହିତ୍ୟରେ ତାକୁ ମେଣ୍ଟାଇବା ଦରକାର ପଡୁଥିଲା । କିଂତୁ ଗ୍ରୀକ୍ ନାଟକର ଜରିଆରେ ତା'ର ରୂପାନ୍ତର ହେଲା । ମନେହେଉ ଯେ ନାୟକର "ହିରୋ"

ପଣ ଆସିବ କେବଳ ଟ୍ରାଜେଡ଼ିର ମାଧ୍ୟମରେ । ଚରିତ୍ରଦୋଷ ଅବା ବିଧିବିଧାନ (ହୁଏତ ତତ୍‌କାଳୀନ ସମାଜ ବିଧାନ)ର ଫଳସ୍ୱରୂପ ନାୟକକୁ ଦାରୁଣ ଦୁଃଖ ସହି-ବାକୁ ପଡ଼ିବ, ଏବଂ ସେହି ମହାଦୁଃଖର ହୋମାଗ୍ନିରେ ତା'ର ଜୀବନ ସାର୍ଥକ ହେବ । ସାନମଣିଷ ଉଂଚ ହୋଇ ପାରିବ । ଟ୍ରାଜେଡ଼ିର ଏହି ମାରକ ଆକର୍ଷଣ ଭାରତୀୟ ସାହିତ୍ୟକୁ ମଧ୍ୟ ନାନାଭାବରେ ପ୍ରଭାବିତ କରି ଆସିଛି । ଏପରିକି ଆଧୁନିକ ଓଡ଼ିଆ ସାହିତ୍ୟରେ ଗୋପୀବାବୁଙ୍କ ଶୁକ୍ରୁଜାନି ଏହିପ୍ରକାର ଟ୍ରାଜେଡ଼ିର ଦାୟାଦ, ଯେହେତୁ ତା'ର ସଂଦେଶ ହେଲା—ଯେତେ ଦୁଃଖ କଷ୍ଟ ଭୋଗିଲେ ମଧ୍ୟ ମୁଁ ହାରି ନାହିଁ, ହାରି ପାରିବି ନାହିଁ, କାରଣ ବଡ଼ପଣ ମୋର ଜନ୍ମସିଦ୍ଧ ଅଧିକାର । କିନ୍ତୁ ପଶ୍ଚିମରେ କ୍ରମଶଃ ଟ୍ରାଜେଡ଼ିର ଭାଉ କମିଗଲା, ଦୁଃଖାତ୍ମକ ପରିଣତି ମଧ୍ୟ ସୁଖାତ୍ମକ ପରି ନିରର୍ଥକ ମନେ-ହେଲା । ବସ୍ତୁବାଦ, ମନସ୍ତତ୍ତ୍ୱ ଇତ୍ୟାଦିର ଦୁହାଇଦେଇ କୁହାଗଲା ଯେ ଖଣ୍ଡିତ ସୀମିତ ମଣିଷ ସବୁବେଳେ ସାନ, ତାକୁ ବଡ଼ବୋଲି ଦର୍ଶାଇବା ଏକ ପ୍ରହସନ ମାତ୍ର । ଏଣୁ ଆଣ୍ଟି ହିରୋ ଆସିବା ହେଉ ଏବଂ ଆଣ୍ଟିକ୍ଲାଇମାକ୍‌ସ, ଅର୍ଥାତ୍ କିଛି କୁଆଡ଼ୁ ନ ହୋଇ ଫୁସ୍‌କି ଯିବାର ଭାବ ହିଁ ହେଉ ତା' କାହାଣୀର ଶେଷକଥା, ତା'ର ଅନିବାର୍ଯ୍ୟ ପାଉଣା ।

ମୋର କ୍ଷୁଦ୍ରବୁଦ୍ଧିରେ ଏଇ 'ଆଣ୍ଟି'ବାଦ ଗୋଟିଏ ଫ୍ୟାଲସି (fallacy) ଆପଣା ଅସଂଗତିରେ ଦୁଷ୍ଟ । ମଣିଷ ଯଦି ଜନ୍ମରୁ ସାନ, ଜୀବନରେ ସାନ, ମୃତ୍ୟୁରେ ସାନ, ତା'ହେଲେ ତା'ବିଷୟରେ କିଛି କହିବା ଦରକାର କ'ଣ ? ଦରକାର କେବଳ ଏଇଥିପାଇଁ ଯେ ସେ ତା'ର ସାନପଣରୁ ଉଦ୍ଧାର ପାଇବାକୁ ଚାହେଁ, ପଡ଼ିଉଠି ବାରମ୍ବାର ତଳକୁ ଗଡ଼ି ଆସିଲେ ମଧ୍ୟ ପୁଣି ଉପରକୁ ଉଠିବାକୁ ଚାହେଁ । ଏଇ ଊର୍ଦ୍ଧ୍ୱମୁଖୀତା ତା'ର ଜାତକରେ ଅଛି । ସେଥିରୁ ତାକୁ ବଂଚିତ କରିବ କିଏ ? କାମ୍ୟୁ କହିଲେ ଯେ ମଣିଷ ଯେତିକି ମହାନ୍ ହେବାକୁ ଚାହେଁ, ସେତିକି ଆବ୍‌ସର୍ଡ ମନେହୁଏ । ବେଶ୍ ତ, ନୈସର୍ଗିକ ସତ୍ୟହେଲା ଯେ ସେ ମହାନ୍ ହେବାକୁ ଚାହେଁ । ପୂର୍ଣ୍ଣଚ୍ଛେଦ । ସେଥିପାଇଁ ଗଧଟୋପି ପିଂଧିବାକୁ ପଡୁ ବା ନ ପଡୁ ସେଥିରେ ଯାଏ କେତେ ଆସେ କେତେ ?

ତେଣୁ ଏଇ ହିରୋ-ଆଣ୍ଟିହିରୋ କ୍ଲାଇମାକସ୍-ଆଣ୍ଟିକ୍ଲାଇମାକ୍‌ସ୍‌ର କଂଦଳରେ ପଡ଼ି ମୁଁ କେଉଁ ପଟକୁ ଯିବି ବୋଲି ଭାବିହେବା ବୃଥା । ତୁମେ ଯେଉଁ ମଣିଷଟିକୁ ଚିହ୍ନିଛ, ଯେମିତି ଭାବରେ ଚିହ୍ନିଛ, ତାକୁ ନେଇ କିଛି ଗୋଟାଏ ଆବିଷ୍କାର ଉଜ୍ଜ୍ୱଳନ ଇତ୍ୟାଦିର ଛବି ଦେଖାଅ ଶେଷବେଳକୁ । ସେଥିରେ ତା'ର ସଫଳତା ଫୁଟି ଉଠୁ ବା ବିଫଳତା, ଉଭୟ ଅର୍ଥପୂର୍ଣ୍ଣ ହେବାକୁ ବାଧ୍ୟ । କିଂତୁ ନିଷ୍ଠା ଏବଂ ସାହସରେ ବିଦଗ୍‌ଧ

ଅସମ୍ପୂର୍ଣ୍ଣତା ହିଁ ଲେଖକର ଦିଗ୍‌ଦର୍ଶନ ଏବଂ ଅନେକ ଦୂରକୁ ତା'ର ଇଶାରା ଓ ପ୍ରତିଶ୍ରୁତି । ହଁ, ମୋର କେବଳ ଏତିକି ନିବେଦନ ଯେ ଜ୍ଞାନବିଜ୍ଞାନପ୍ରସୂତ ଆଧୁନିକତାର ପରି-ପ୍ରେକ୍ଷୀରେ ବିନୟୀ ହେବା ଶ୍ରେୟସ୍କର । ତେଣୁ ତୁମ ନାୟକ ଯେତେ ବୀର ହେଲେ ମଧ୍ୟ ନିଃସନ୍ଦେହତା, ନିଶ୍ଚିତତା, 'ଏଇ ଦେଖ ମୁଁ ଜିତିଗଲି'ର ବୀରତ୍ୱ ନ ଦେଖାଉ । ଏବଂ ଧୀରବଚନ ସ୍ୱଳ୍ପକଥନରେ ଫୁଟିଉଠୁ ତୁମ ଶେଷକଥାର ଚମକ । ମୋ ବିଶ୍ୱାସରେ ସେଥିରେ ତୁମର ବାଞ୍ଛିତ ଝଡ଼ ଆହୁରି ପ୍ରବଳ ହୋଇ ଉଠିବ ପାଠକର ମନରେ ଏବଂ ଝଡଶେଷର ଆଭିମୁଖ୍ୟ ଆହୁରି ବିଚିତ୍ର ଏବଂ ବହୁମୁଖୀ ହୋଇ ଉଠିବ ତା'ପାଇଁ...... ତଥା ଭବିଷ୍ୟତ ପାଇଁ ।

ଆଜିକାର ଲେଖା ସାରିବା ପୂର୍ବରୁ ଗୋଟିଏ ସାମାନ୍ୟ ସୁପାରିଶ । ମୁଣ୍ଡି ମାରିବା ପାଇଁ ଗୋଟିଏ ଚିରଚରିତ ପ୍ରଲୋଭନ ରହି ଆସିଛି—ହସିବା ଅଥବା କାଂଦିବା । ସ୍ୱାଭାବିକ ଏବଂ କେତେକ କ୍ଷେତ୍ରରେ ଯଥାର୍ଥ ଏହି ପ୍ରଲୋଭନ । କାରଣ ଏଇ ଦୁଇଟି ନୀରବ ପ୍ରକ୍ରିୟା ଦ୍ୱାରା ଅନେକ କଥା କହିହୁଏ । ଯାହାକୁ ଭାଷାରେ ପ୍ରକାଶ କରି ହୁଏନାହିଁ । ହେଲେ ସାଧାରଣତଃ ଇଏ ହେଉଛି ଗୋଟିଏ ସହଜ ପନ୍ଥା, ତେଣୁ ଦଳାଚକଟା ମଡା ବାଟ । ଅତଏବ ଯେତେଦୂର ସମ୍ଭବ, ତାକୁ ଆଡ଼େଇ ଦେଇ ଘରେ ପହୁଂଚି ପାରିଲେ ଭଲ ହେବ ନାହିଁକି ?



ବର୍ତ୍ତମାନ ପଡ଼୍ ପୂର୍ବରୁ କୁହାଯାଇଥିବା ଅନ୍ୟତମ ଅନୁଶାସନର କଥା "ଆନର ଚେତନାରେ ଭବଭବନାର 'ନୂଆ' ଅତିଥିଟିଏ ପହଂଚେଇବାକୁ ହେବ । ଅର୍ଥାତ୍ ତୁମକୁ କିଛି ନୂଆ କଥା କହିବାକୁ ହେବ ଯାହା ବାସ୍ତବରେ ଯେତେ ପୁରୁଣା ଅବା ଶାଶ୍ୱତ ହେଉ ନା କାହିଁକି ।" କଥାକୃତିର ସଫଳତା ପାଇଁ ତୃତୀୟ, ଏବଂ ମୋ ମତରେ ସର୍ବପ୍ରଧାନ ଅନୁଶାସନ ।

ମୁଁ ଏଇଟିକୁ ସର୍ବପ୍ରଧାନ ବୋଲି କହୁଛି କାରଣ ଆମର ଏଇ ଚିରପରିଚିତ ଘସରା ସଂସାରରେ "ନୂଆ"ର ପ୍ରତିଶ୍ରୁତି ହିଁ ସବୁଠାରୁ ବଡ଼ ଆକର୍ଷଣ । ଧର ଜଣେ ଲେଖକର ଗପ ପଢ଼ିବାକୁ ସୁଖ ଲାଗୁଛି, ଚରିତ୍ର-ଘଟଣା-ପରିବେଶର ଅସ୍ତିତ୍ୱ ଏବଂ ଛଂଦାଛଂଦି ସତ ପରି ମନେହେଉଛି, ତେଣୁ ପଢ଼ୁ ପଢ଼ୁ ଶେଷଯାଏଁ ପଢ଼ିହୋଇଗଲା । ଆଗ୍ରହର ଉତ୍କଣ୍ଠା ... ଶେଷ ଧାଡ଼ି ଯାଏଁ । କିଂତୁ ତା'ପରେ ଯଦି ବିଦ୍‌ଗଧ ପାଠକ ଗପକୁ ଏଠି ସେଠି ପୁଣି ଥରେ ପଢ଼ି ବସିଲା, ଉପଭୋଗକୁ ଗାଢ଼ୁକେଇବା ପାଇଁ ନୁହେଁ, ଖୋଜିବା ପାଇଁ, ଏବଂ ଗୋଟାଏ ଅଭଦ୍ର ପ୍ରଶ୍ନ ପଚାରିଲା—"ଆଉ କିଛି ନାହିଁ ??" ତାକୁ ନିର୍ବୋଧ କୁହ ଅବା ନିଷ୍ଠୁର, ଜାଣିରଖ ଯେ ସେ ତୁମ ନାଆଁରେ ଛପା ହୋଇଥିବା ଗପକୁ ଆଉ କେବେ ପଢ଼ିବାକୁ ଚାହିଁବ ନାହିଁ । ଭାବିବ ଯେ ଲେଖକଟା ଠକେଇ ଦେଲା ମୋତେ । କାରଣ ସେ ତୁମଠାରୁ ଅଳସ ବିଳାସ ସୁଖପାଠରୁ କିଛି ଅଧିକ ଆଶା କରୁଥିଲା । ଜଣାଶୁଣାର ନୂତନ ଅର୍ଥ, ଅବା ଜଣାଶୁଣା ଅର୍ଥର ନୂତନତ୍ୱ । କିଂତୁ ତା'କୁ ଯଦି ଜେରା କରାଯାଏ—"ବାବୁ, କ'ଣଟି ନୂଆ ଖୋଜୁଥିଲ କହିଲ ? କୋଉ ଘଟଣାର ଅଘଟଣ ? କୋଉ ଚରିତ୍ରର ବିସ୍ଫୋରଣ ? ନା ଭାବୁଥିଲ ମଂଗଳ ଗ୍ରହରୁ କେହି ଆସି ପହଂଚିବ ତୁମ ପାହିରେ ?" ଇତ୍ୟାଦି, ସେ ନିଶ୍ଚୟ କହିବ—ନା, ନା, ମୁଁ ସେ କଥା କହୁନାହିଁ, ମୁଁ ଜାଣେ ଯେ ବାସ୍ତବତା ଏଇଆକୁ କୁହନ୍ତି...କିଂତୁ... କିଂତୁ... । ପ୍ରକୃତରେ ପାଠକଠାରୁ ଉତ୍ତର ଲୋଡ଼ିବା ଅନ୍ୟାୟ, କାରଣ ସେ ତା'ର ଈପ୍‌ସିତ ଅପେକ୍ଷିତ ନୂତନ ବସ୍ତୁଟିକୁ ଚିହ୍ନେଇ ପାରିବ ନାହିଁ । ଚିହ୍ନେଇ ପାରୁଥିଲେ ତାକୁ ନୂଆ ବୋଲି କୁହନ୍ତା କେମିତି ? ତା'ର ଅନିର୍ଦ୍ଦିଷ୍ଟ "ଆଉ କିଛି"ର ଚାହିଦା

ହେଉଛି ତୁମରି ଅନିର୍ଦ୍ଦିଷ୍ଟ କିଂତୁ ପରମ ବିଶିଷ୍ଟ ଦେୟ । ସାଧାରଣ ଘଟଣା ଚରିତ୍ର-ପରିବେଶର କାହାଣୀ ଉପରେ ମୋହର ମରିଥିବା ଗାର୍ଣ୍ଣିକର ବକ୍ତବ୍ୟ, ଯାହାର ଅର୍ଥ (ତେଣୁ ଗପର ଅର୍ଥ) ପାଠକ ତା' ନିଜ ବୁଦ୍ଧିରେ ଛାଂକି ନେଇପାରିବ। ଏବଂ କେବଳ ସେଇ ବାଟଦେଇ ସେ ନୂଆ ଅତିଥିର ସନ୍ଧାନ ପାଇ ପାରିବ। ଏଇ ଦେଣା ପାଉଣା ହିଁ ଲେଖକ ଓ ଲେଖକ ମଧ୍ୟରେ ମୌଳିକ ପାର୍ଥକ୍ୟର ସୂଚନା ଦିଏ ଏବଂ ଏହାରି ଅଭାବ ଓ ସମୃଦ୍ଧି ଯଥାକ୍ରମେ ଜଣାଇ ଦିଏ ଯେ ଇଏ ହେଉଛି କେବଳ ଗପ, ଆଉ ଯାକୁ କହିବ ସାହିତ୍ୟ ।

ଲେଖକର ଏଇ ନିଜସ୍ୱ ଅବଦାନର ଭିନ୍ନତା କେବଳ ରସରେ ନାହିଁ। ଗଭୀର ହତାଶାର ବକ୍ତବ୍ୟ ହାସ୍ୟରସରେ ଉବୁଟୁବୁ ହୋଇପାରେ । କେବଳ ଆଭିମୁଖ୍ୟରେ ନାହିଁ। ଅନେକାଂଶରେ ଲେଖକର ଆଭିମୁଖ୍ୟ ତା'ର ସାମାଜିକତାର ଲକ୍ଷଣ, ଉଚିତ ବିଗ୍ରହ ଅନୁଯାୟୀ ଉଚିତ "କାମ" ନ କରି ପାରିବାର କ୍ଷତପୂରଣ । ନୁହେଁ ଲେଖକୀୟ ବାଣୀ (authorial voice) ଯାହାର ଉଲ୍ଲେଖ କରିଛି ଅଷ୍ଟମ କିସ୍ତିରେ, କାରଣ ତାହା ମୋଠାରୁ ଶୁଣବୋଲି ବ୍ୟସ୍ତହୋଇ ଉଠିବାର ଏକ ସଚେତନ ପ୍ରବୃତ୍ତି। ଅଥଚ ବକ୍ତବ୍ୟ ଆପାତତଃ ଅବ୍ୟକ୍ତ, ହେଲେ ତା'ର ସମଗ୍ର ବ୍ୟକ୍ତିତ୍ୱର ପ୍ରତିଫଳନ। ଯେଉଁଥିରେ ନିଶ୍ଚୟ ଥିବ କିଛି ମନପସଂଦ ରସର ରଂଜନ, କିଛି ନିଜଗଢ଼ା ଆଭିମୁଖ୍ୟର କଥନ, କିଛି ଲେଖକୀୟ ବାଣୀର ପରିପ୍ରକାଶ, କିଂତୁ ତା'ଛଡ଼ା ଅନେକ ନିଜଗତର ଛାଇଆଲୁଅ, ଯାହା ପୂରପୂରି ତା'ର ଅକ୍ତିଆରରେ ନାହିଁ । ଅର୍ଥାତ୍ ଜନ୍ମ, ବାଲ୍ୟାବସ୍ଥା, ଜୀବିକା, ନିବାସ, ପରିବେଶ, ସ୍ୱାସ୍ଥ୍ୟ ଇତ୍ୟାଦି ଇତ୍ୟାଦିରୁ ପ୍ରସୂତ ଯେତେକ ଦାଂଭୀକତା, ହୀନ-ମନ୍ୟତା, ସଗଗ ବିଗଗ ଆଦି ଦୋଷଗୁଣର ସାପେକ୍ଷତା ।

ଏ ସମସ୍ତକୁ ନେଇ ଗୋଟାଳି ବାଂଧିଥିବା ପାଚନ ହେଉଛି ତା'ର ବକ୍ତବ୍ୟ, ଦର୍ଶନ ବାଢିବାର ପ୍ରଗଲ୍‌ଭତା—"ଜୀବନଟା ଏଇଆ !"

ତୁମର ପ୍ରତ୍ୟେକ ଗଳ୍ପର ଯେ ଏକ ନିର୍ଦ୍ଦିଷ୍ଟ ନିରୂପିତ ଜୀବନ ଦର୍ଶନ ବୁଝି ଉଠିବ ଜଳଜଳ ହୋଇ, ତା'ନୁହେଁ । ବାଟଚଲାର ନାନା ଅନୁଭବ ଓ ଅଭିଜ୍ଞତା ନେଇ ଜୀବନକୁ କେତେବେଳେ କେଉଁ ଭାବରେ ଛିଗୁଲେଇବାକୁ, ସପିବାକୁ, ହସି ଉଡ଼େଇ-ଦେବାକୁ, ମୁଠେଇ ଧରିବାକୁ, ଅବା ରମିବାକୁ ଇଛାହେବ । ପରିଣିତା ସାଙ୍ଗରେ ଘର କଲାପରି। କିଂତୁ କାଳକ୍ରମେ ପ୍ରତ୍ୟେକ ସଚେତନ ଦଂପତି କ'ଣ ତାଂକ ଅଂତରଂଗ ସମ୍ପର୍କର ରଂଗକୁ ଠଉରେଇ ପାରିବେ ନାହିଁ, ଯେଉଁଥିରେ ଗୋଟାଏ ମୌଳିକ ରଂଗର

ପ୍ରଭୁତ୍ୱ (dominance) ଧରା ପଡ଼ିଯିବ ? ସେହିପରି ଭବରେ ପ୍ରତ୍ୟେକ ଗାଳ୍ପିକ ନାନା ବିଭିନ୍ନ ଧରଣର ଗଳ୍ପ ଲେଖି ସାରିଲା ପରେ ନିଜେ ଜାଣିପାରିବ ବୋଲି ମୋର ବିଶ୍ୱାସ ଯେ ବୋଧହୁଏ ସେ ମୋଟାମୋଟି "ଜୀବନଟା ଏଇଆ !" ବୋଲି କହିଛି, ଅର୍ଥାତ୍ ତା'ର ଜୀବନ ସମ୍ପର୍କରେ ଏଇ ହେଉଛି ସଭାଧାରୀ ରଂଗ—ବିସ୍ମୟ, ଆମୋଦ, ପ୍ରେମ, ଅ-ପ୍ରେମ, ଅନାସ୍ଥା, ପାଇ ନ ପାଇବାର କଲବଲ, ଅବା ଆଉ କିଛି । ସେଇଠୁଁ ସେ କ'ଣ ଖୁସିଟାଏ ହୋଇ କହିପାରିବ ନାହିଁ—ଦେଖ, ଏଇ ହେଉଛି ମୋର ବକ୍ତବ୍ୟ ?

ଏବଂ ତା'ର କ'ଣ ଅଧିକାର ନାହିଁ କହିବାକୁ ଯେ ଯେହେତୁ ମୁଁ ଅଦ୍ୱିତୀୟ, ମାନେ ମୋର ସାପେକ୍ଷତା ଭବଭବନାର ଠିକ୍ ଯେତିକି ଡିଗ୍ରୀର କୋଣରେ ଏବଂ ଯେତିକି ହାଲୁକା ଅବା ଟାଣୁଆ ହୋଇ ଢଳିଛି ଜୀବନ ଆଡ଼କୁ, ତାହା ଆଉ କାହାରି ଠାରେ ନଥିବ, ମୋର ବକ୍ତବ୍ୟରୁ କିଛି ନୂଆ ମିଳିବା ଉଚିତ୍ ?

ବର୍ତ୍ତମାନ ଅନେକଗୁଡ଼ିଏ ପ୍ରଶ୍ନ ଜମି ଆସିବଣି ତୁମ ମନ ଭିତରେ, ଯାହାର ଉତ୍ତର ଯୋଗାଇବାକୁ ପଡ଼ିବ । ଯଥା :—(୧) ଏଇ ସାପେକ୍ଷତା, ଅଡେଇ ହୋଇଯିବା ଢଙ୍ଗ, ଯାହାକୁ ଇଂରେଜୀରେ bias ବୋଲି କୁହାଯିବ, ତାକୁ କ'ଣ ଚେଷ୍ଟା ସହକାରେ ନିକାଲି ଦେବା ଉଚିତ ନୁହେଁ ? ଯେତେଦୂର ସମ୍ଭବ ସିଧାସଳଖ ଓ ବିଚ୍ଛିନ୍ନ ହୋଇ ଜୀବନ ଉପରେ ଟୀପ୍ପଣୀ ଦେଲେ ସିନା ତାହା ନିର୍ମଳ, ତେଣୁ ଗ୍ରହଣୀୟ ହେବ ? (୨) ଅପରପକ୍ଷେ ଯଦି କୁହାଯାଉଛି ଯେ ସେତିକି ବକ୍ତବ୍ୟର ଅପରିହାର୍ଯ୍ୟ ଅଂଶବିଶେଷ ଓ ତା ଉପରେ ଗାଳ୍ପିକର ଅକ୍ତିଆର ନାହିଁ, ତାହାହେଲେ ସେ କ'ଣଟା କରି ପାରିବ ତା'ର ବକ୍ତବ୍ୟକୁ ଠିକଣା ଭବରେ ଦର୍ଶାଇବା ପାଇଁ ? (୩) ଏଇ ମୋର ବକ୍ତବ୍ୟ ବୋଲି ଠଉରେଇଲା ପରେ କ'ଣ କଥା ଛିଣ୍ଡିଗଲା ? ମୋ ବକ୍ତବ୍ୟରେ ନୂତନତ୍ୱ ଥିବ ହିଁ ଥିବ, ଅତିଥି ଆପେ ଆପେ ପହୁଂଚିଯିବ ବୋଲି ଧରିନେଇ ଆରମରେ ମନଇଚ୍ଛା ଲେଖିଯିବା କଥା ?

ମୋ ବିଚାରରେ ପ୍ରଥମ ପ୍ରଶ୍ନର ଉତ୍ତର ଏହିପ୍ରକାର : ଯେହେତୁ ମୁଁ ସାମାନ୍ୟ ଲେଖକ, ଏବଂ ଯେତେଦିନ ଯାଏଁ ମୁଁ ଲେଖିବାର ନିର୍ମମ ତାଡ଼ନାକୁ ଟାଳିଦେଇ ପାରୁ ନାହିଁ, ମୋର ଦାର୍ଶନିକତା ଦୂଷିତ ହୋଇଥାଉ । ସେଇ ଭଲ । ତାକୁ ଚେଷ୍ଟା କରି ନିର୍ମଳ କରିବାକୁ ବସିଲେ ଅର୍ଥାତ୍ ମୋ ଚିଂତାକୁ ଜୋର୍ କରି ଅନୁଭୂତିରୁ ଛଡ଼ାଇ ନେଇ ଏହା ହିଁ ସତବୋଲି ନିକ୍ଷେପିଲେ (ଯାହା ପ୍ଲାଟୋ ଆଦି ଆଦର୍ଶବାଦୀ ଦାର୍ଶନିକମାନଙ୍କ ସୁପାରିଶ), ମୋର ସାହିତ୍ୟ କୃତ୍ରିମ ହୋଇଯିବ ବୋଲି ମୋ ଦୃଢ଼

ବିଶ୍ୱାସ । ଏବଂ ସଚ୍ଚା ଦାର୍ଶନିକତା ଯେ ଏଇଆକୁ କୁହନ୍ତି, ତାହା ମଧ୍ୟ ଏକ ବିବଦମାନ ପ୍ରଶ୍ନ । ତେଣୁ (କ) ମୋର ଅନୁଭୂତି ଯଦି କହୁଛି ଯେ ମୋଟ ଉପରେ ଜୀବନଟା ପିତା, (ଖ) ଅନୁଭୂତିରେ ଚିଂତା ମିଶେଇ ଯଦି ମନେହେଉଛି ଯେ ପିତା ସିନା, ଏଇ ତିକ୍ତତାରେ ଯେଉଁ ଅତି-ଅନୁଭବର ଉଦ୍ଦୀପନା ଅଛି, ଏହାର କଡ଼େ କଡ଼େ ଯେଉଁ ମଧୁରତା ଅଛି, ଯାର ଆଗକୁ ଯେଉଁ ସଂଭବନାର ଆଶା ଓ ଅନୁମାନ ଅଛି, ତା'ର ବାସ୍ତବତାକୁ ମଧ୍ୟ ଅସ୍ୱୀକାର କରିବାର ନୁହେଁ, ଏବଂ (ଗ) ଧ୍ୟାନଧାରଣା ବା ଅନ୍ୟ କେଉଁ ମାର୍ଗରେ ଯଦି ମୋର ଚିଂତା ଅନୁଭୂତିରୁ ଫିଟିଯାଇ କହିବାକୁ ଚାହେଁ ଯେ ଏଇ ପିତା ପ୍ରକୃତରେ ପିତା ନୁହେଁ ମିଠା, ମିଠା ହେବାକୁ ବାଧ୍ୟ...ତା'ହେଲେ ମୁଁ ଗାଳ୍ପିକ ହିସାବରେ (କ) ଅଥବା (ଖ) କୁ ଆବୁରିବି ସିନା; (ଗ)ର ଲୋଭରେ ପଡ଼ିବାକୁ ଚାହେଁ ନାହିଁ । ମୋତେ ଅନୁଭୂତିର ଅଂଧଗଳିରୁ ଉଦ୍ଧାର କର, ତାହା ଅନ୍ୟ ଏକ ଅଭିଳାଷ, ଅନ୍ୟ ଏକ ପ୍ରାର୍ଥନା । ଯଥାର୍ଥ ହେଲେ ସାହିତ୍ୟ ସାଧନର ବହିର୍ଭୂତ ।

ଦ୍ୱିତୀୟ ପ୍ରଶ୍ନର ଉତ୍ତର ମୁଁ ଏହି ଭବରେ ଦେବାକୁ ଚାହେଁ : ହୋଇପାରେ ଯେ ତା' ଉପରେ ତୁମର ପୂର୍ଣ ଅକ୍ତିଆର ନାହିଁ । କିନ୍ତୁ ତାକୁ ଚିହ୍ନିଲ ପରେ ତୁମେ ନିଶ୍ଚୟ ତା'ଉପରେ ତୁମର ମମତ୍ୱ ବିସ୍ତାର କରି ପାରିବ, ଏବଂ ତାକୁ ହାତଛଡ଼ା ହେବାକୁ ଦେବ ନାହିଁ ଏହା ହିଁ ଆଶା କରଯାଏ । ଯେତେବେଳେ ମନେହେବ ଯେ ତୁମେ ଖାଲି ମଜା କଥାଶୁଣାଉ ନାହଁ, ତୁମେ ତୁମର ଭାଇଭଉଣୀମାନଙ୍କୁ କହିବାକୁ ଚାହଁ ଯେ ଜୀବନଟା ଗୋଟାଏ ମଉଜ, ଚର୍ବ୍ୟ ଚୋଷ୍ୟ ଲେହ୍ୟ ପେୟର ଭୋଜିଭାତ; ଯେତେବେଳେ ମନେହେବ ଯେ ଘଟଣା ଅବା ଚରିତ୍ରର ଆଶ୍ଚର୍ଯ୍ୟଜନକ ପରିଣତି ଦେଖାଇବା ଛଡ଼ା ତୁମେ କହିବାକୁ ଚାହଁ ଯେ ଜୀବନର ସାରକଥା ହେଲ ଏଇ ବିସ୍ମୟ, ହୁଏତ ମୃତ୍ୟୁର ଆକସ୍ମିକତା ମଧ୍ୟ ଏଇ ବିସ୍ମୟର ସଂତାନ, ଇତ୍ୟାଦି, ସେଇଠୁ ତୁମେ ଏଇ ଆବିଷ୍କାରକୁ କୁଣ୍ଢେଇ ଧରିବ, ଏହା ହିଁ ମୋର ଈପ୍‌ସିତ ଅନୁମାନ ।

କିଂତୁ ଏହା ମଧ୍ୟ ସଂଭବ ଯେ ତୁମେ ତାକୁ ମୋଟେ ଚିହ୍ନିବ ନାହିଁ, ତେଣୁ ପରବର୍ତ୍ତୀ ଆବେଗର ଅବକାଶ ନାହିଁ । କାରଣ ତୁମର ଉଦ୍ଦେଶ୍ୟ କେବଳ ଗପ ଲେଖିବା, ତାକୁ କିଏ ସାହିତ୍ୟ ବୋଲି କହୁ ବା ନ କହୁ ।

ଅନ୍ୟ ଅର୍ଥରେ ଇଣ୍ଟେଲେକ୍‌ଚୁଆଲ୍ ହେବାର କ୍ଳେଶ ଓ ଭରୀପଣ ତୁମକୁ ସୁହାଏ ନାହିଁ । ସେହେତୁ ସାହିତ୍ୟ ଗଢିବାର ଓ ବାଢିବାର ଚିଂତାବନ୍ତ ସୁଖ ତୁମକୁ ଲୋଭେଇ ପାରିନାହିଁ । ଏଥିରେ ଦୁଃଖ କରିବାର କିଛି ନାହିଁ । କେବଳ ଘଟଣାର ଚମତ୍କାରିତା,

କେବଳ ରହସ୍ୟର ଗୋଲକଧଂଦା, କେବଳ ଫ୍ୟାଣ୍ଟାସି......ଇତ୍ୟାଦିର ଯଥେଷ୍ଟ ମୂଲ୍ୟ ଅଛି, କାରଣ ତଦ୍ୱାରା ଆମର ଚେତନା ବେଶ୍ ବାଂଧି ହୋଇଯାଏ କିଛି ସମୟ ପାଇଁ, ଏବଂ ପଳାୟନର ସୁଖ ଆଣିଦିଏ । ପୃଥିବୀର ବହୁ ଜନପ୍ରିୟ 'ବେଷ୍ଟ୍ ସେଲର୍' ଗୁଡ଼ିକ ସାହିତ୍ୟ ନ ହେଲେ ମଧ୍ୟ ସେଥିର ଉପଯୋଗିତା ବିଷୟରେ କିଛି କହି ବସିବା ଅନାବଶ୍ୟକ । ତେଣୁ ଯଦି ତୁମେ ଚିଂତା ପ୍ରବଣ ନୁହଁ, ଦାର୍ଶନିକତାର ପାଖ ମାଡ଼ିବାକୁ ଚାହଁ ନାହିଁ, ମଣିଷ ଦଶା ବିଷୟରେ କିଛି ଭାବିବାର ଓ କହିବାର ଉତ୍ସୁକତା ନାହିଁ ତୁମ ପାଖରେ, ତାହାହେଲେ ଭଲହେବ ତୁମେ ଖାଲି ଉତ୍କୃଷ୍ଟ ଗପ ଲେଖିବାକୁ ଚେଷ୍ଟାକର । ସେଥିପାଇଁ ମଧ୍ୟ ମୁଁ ପୂର୍ବ କିସ୍ତିମାନଙ୍କରେ ଯାହା କହିଗଲି ତା'ର ଅଧିକାଂଶ ସୁପାରିଶକୁ ପ୍ରୟୋଗ କରିହେବ, ପରଖି ହେବ ଏବଂ ଚଳିତ କିସ୍ତିକୁ ଭୁଲିଗଲେ ଯାଏ ଆସେ ନାହିଁ । ଅଯଥାରେ ସାହିତ୍ୟ ନାମକ ଉଚ୍ଚାସନରେ ବସିବାକୁ ଲୋଭକରି ଏକେ ଅରୁଚିଆ ଗପ, ବୁଢେ କୃତ୍ରିମ ସାହିତ୍ୟର ପାଲରେ ପଡ଼ନାହିଁ ।

ଇଂରେଜୀରେ ଗୋଟିଏ ସୁ-ଉକ୍ତି ଅଛି ଯେ ଯେଉଁଲୋକ ପ୍ରାୟ ସଦାବେଳେ ନିଜକୁ ଲକ୍ଷ୍ୟ ରଖୁଥାଏ, ତାକୁ ଇଣ୍ଟେଲେକ୍ଚୁଆଲ୍ କୁହାଯାଏ । ମୋର ନିବେଦନ ହେଉଛି ଯେ ଯଦି ତୁମେ ନିଜକୁ ସେହି ଶ୍ରେଣୀର ଛାତ୍ରବୋଲି ମନେକରୁ ଥାଅ, ଏବଂ ସେଥିରେ ତୁମର ଯତ୍କିଂଚିତ୍ ଗର୍ବ ଓ ଆନଂଦ ରହିଛି, ତାହେଲେ ତୁମେ ଦୟାକରି ଲକ୍ଷ୍ୟକର ଯେ ତୁମ ଗପମାନଙ୍କରେ କିଛି ଗୋଟାଏ ବକ୍ତବ୍ୟ ବାଂଧି ହୋଇଗଲା ପରି ଦିଶୁଛି ନା ନାହିଁ, ଏବଂ ତାହା ତୁମ ବ୍ୟକ୍ତିତ୍ୱର ସଂତାନ, ସଚ୍ଚା ସନ୍ତାନ, ପରି ମନେ-ହେଉଛି କି ନାହିଁ । ଅଳ୍ପବହୁତ ମନେହେଉଥିଲେ ତାକୁ ଯଥାବିଧି ସଂଶ୍ଳିଷ୍ଟ ଏବଂ ଆଖି ଦୁରୁଶିଆ କରିବାକୁ ହେବ, ତାକୁ ଗପରୁ ଗପ ଯାଏଁ ବାଗେଇବାକୁ ହେବ...... ଟାଣି ଓଟାରି ନୁହେଁ, ବିବେକୀ ଓକିଲ ଯେମିତି ସତ କେସ୍କୁ ଗ୍ରହଣୀୟ ଶତ ରୂପରେ ସଜାଡୁଥାଏ । ଲେଖକ ହିସାବରେ ଏତିକି ତୁମର ଅକ୍ତିଆରରେ ଅଛି । ଏବଂ ଏହା ହିଁ କରଣୀୟ ।

ତେବେ କେତୋଟି ଦିଗରେ ସାବଧାନ ରହିବାକୁ ପଡ଼ିବ । ଏକ—ତୁମର ବ୍ୟକ୍ତିତ୍ୱପ୍ରସୂତ ବକ୍ତବ୍ୟ ଯେ ସାରଜୀବନ ସମାନ ହୋଇ ରହିବ, ତା' ନୁହେଁ । ବରଂ ସାଧାରଣତଃ ବୟସ ଓ ଅଭିଜ୍ଞତା ବଢିବା ଢଙ୍ଗେ ସଙ୍ଗେ ସେଥିରେ ପରିବର୍ତ୍ତନ ହେବା ସ୍ୱାଭାବିକ । ଯଥା:—ବାଲ୍ୟ ଓ ପ୍ରଥମ ଯୌବନରେ ମନେହେବ ଜୀବନଟା ବିସ୍ମୟ, ପରି-ଣତ ଯୌବନର ଦାଂଭୀକତା ତୁମକୁ ଊର୍ଦ୍ଧ୍ୱରେ ଥାଇ ମୃଦୁ ମୃଦୁ ହସିବାପାଇଁ ଉସ୍କେଇବ,

କିଂତୁ ପରବର୍ତ୍ତୀ ଜୀବନରେ ଆମୋଦ ବୋଧହୁଏ ତିଷ୍ଠି ପାରିବ ନାହିଁ, ତେଣୁ ତିକ୍ତତା ଆସିଯିବ ଏବଂ ଶେଷ ଜୀବନରେ ବିଷାଦ, ବିଷାଦରୁ ବିକଳ ଆସ୍ତିକତା...ଭଗ୍ୟରେ ଥିଲେ ଉପଲବ୍ଧି । ହାରାହାରୀ କ୍ରମ ଏହି ପ୍ରକାର ହେଲେ ମଧ୍ୟ ଆପଣା ଆପଣା ବାଟଚଲାର ଅଭିଜ୍ଞତା ନେଇ ଏଥିରେ ନାନା ଧରଣର ଭିନ୍ନତା ରହିବାକୁ ବାଧ୍ୟ । ଏବଂ କେତେକ କ୍ଷେତ୍ରରେ କ୍ରମର ଓଲଟପାଲଟ ଅସଂଭବ ନୁହେଁ । ତେଣୁ ଏଭଳି ପରିବର୍ତ୍ତନକୁ ନେଇ ବିଚଳିତ ହେବାର କାରଣ ନାହିଁ । କେବଳ ଏତିକି ଖିଆଲ ରଖ ଯେ କେଉଁ ଏକ ସୁପ୍ରଶସ୍ତ ପର୍ଯ୍ୟାୟରେ ବ୍ୟକ୍ତିତ୍ୱର ସାମଗ୍ରିକ ରଂଗକୁ ଚିହ୍ନି ହେଉଛି କି ନାହିଁ । ତହୁଁ ତା'ରି ସନ୍ଧାନରେ ଏବଂ ତାକୁଇ ଚିହ୍ନେଇଲା ପରି ଗଢି ଉଠୁଥିବା ବକ୍ତବ୍ୟକୁ ସଜାଡ଼ିବା କଥା । ଦୁଇ—ଭବ ନାହିଁ ଯେ ଏଇ ସାମଗ୍ରିକ ରଂଗ ମିଶାମିଶି ହୋଇ ଗୋଟିଏ ବୋଲି ରଂଗ । ନା । ଯାହା ଆଗରୁ କହିଛି—ଗୋଟିଏ ସତ୍ତାଧାରୀ ରଂଗକୁ ନେଇ ତତ୍‌କାଳୀନ ସୌରମଣ୍ଡଳର ଶୋଭା । ମୁଁ ତା'ରି ନିରୂପଣ ଓ ଚିତ୍ରଣ ପାଇଁ ଡାକୁଛି ତୁମକୁ କଥାଟିକୁ ସାହିତ୍ୟ ଆଡ଼କୁ ନେଇଯିବା ପାଇଁ । ତିନି—ଅତି ସାବଧାନ ରହିବ (ଏଇଠି ଅନେକଙ୍କର ସ୍ୱେଚ୍ଛାକୃତ ଅବା ଅନିଚ୍ଛାକୃତ ଭୁଲ୍ ହୁଏ, ଯାହାକୁ ଶଠତା ବୋଲି କହିବାକୁ ପଡ଼ିବ) ଯେ ବକ୍ତବ୍ୟଟି ତୁମ ବ୍ୟକ୍ତିତ୍ୱର ଅନୁମୋଦିତ ଈପ୍‌ସିତ, ଅବା ଆଦର୍ଶ ସଂତାନ ନୁହେଁ, ସଚ୍ଚା ସନ୍ତାନ । ବାସ୍ତବରେ ଜୈବିକ ଏବଂ ଆର୍ତ୍ତିକ । ଯଥା:—ସଚ୍ଚାପଣ ବ୍ୟାହତ ହେବ ଯଦି ତୁମ ମନରେ ଆସେ ଯେ ବାପମାଆ, ସ୍ତ୍ରୀ ପରିବାର, ଭଇବଂଧୁ ଯାକୁ ପଢି ମୋ ବିଷୟରେ କିଛି "ଖରାପ" ଧାରଣା କରିବେ ନାହିଁ ତ ? ଲୋକେ ଭବିବେ ନାହିଁ ତ ମୁଁ ସମାଜକୁ ଅବାଟରେ ନେଇ ଯାଉଛି ? ଅର୍ଥାତ୍ ଯଦି ତୁମର ଆଶଂକା ହୁଏ ଯେ ତୁମ ଇମେଜ୍‌ରେ ଧୂଳି ଲାଗିଯିବ । ମନେରଖ ଯେ କଳା ଏକମାତ୍ର ମାଧ୍ୟମ ଯେଉଁଥିରେ ମଣିଷ ନିଜକୁ ଖୋଲିଦେଇ ପାରିବ । ସମାଜରେ ଚଳିବା ପାଇଁ ତଥା ନିଜକୁ ସମାଜର ଯୋଗ୍ୟ କରିବା ଉଦ୍ଦେଶ୍ୟରେ ସଦାସର୍ବଦା ଯେଉଁ ଅପରିହାର୍ଯ୍ୟ ବୈଷମ୍ୟ ଓରଫ୍ ମିଛ (ଭବିବାରୁ କହିବା, କହିବାରୁ କରିବା, ପୁଣି ଭବନାର "ଅନୁଚିତ" ଅଂଶକୁ ଇଏ ମୋର ଭବନା ନୁହେଁ ବୋଲି ପାଖରୁ ଠେଲିଦେବା)ର ଆଶ୍ରୟ ନେବାକୁ ପଡ଼େ, ସେଥିରୁ ମୁକ୍ତି ପାଇ ପାରିବ । ହୁଏତ ଚିତ୍ରକଳା ତୁଳନାରେ ସାହିତ୍ୟର ସ୍ୱାଧୀନତା ଊଣା, ଏବଂ ପଦ୍ୟ ସାହିତ୍ୟ ତୁଳନାରେ ଗଦ୍ୟ ସାହିତ୍ୟର ସ୍ୱାଧୀନତା ଆହୁରି ସୀମିତ । ତଥାପି ପୂର୍ବ ବର୍ଣ୍ଣିତ ଏରୁଣ୍ଡିବନ୍ଧର ସର୍ବୋଚ୍ଚ ସୀମାରେଖା ଯାଏ; ପ୍ରତ୍ୟକ୍ଷରେ ହେଉ ବା ଇଙ୍ଗିତରେ—ଇଂଗିତର କାର୍ଯ୍ୟକାରିତା ତୁମର କଳାକୌଶଳ ଉପରେ ନିର୍ଭର କରେ—ଆପଣାର

ବାସ୍ତବ ଓ ଅନୁଭୂତ ସତକୁ ଅଜାଡ଼ି ଦେବାର ଆନଂଦ...ଆଃ, କି ଯେ ସେ ଆନଂଦ !... ତାକୁ ହରାଇବ କାହିଁକି ? ଏ ବିଷୟରେ ଯେତେ କହିଲେ ବି ଦ୍ୱିରୁକ୍ତି ବୋଲି ଲାଗୁନାହିଁ ମୋତେ । କାରଣ ମୋ ଜୀବନରେ ମୁଁ କେତେ ଦେଖିଛି, କେମିତି 'ଭଲ' ଲେଖକମାନେ 'ଭଲ' ଲେଖା ଲେଖିଛନ୍ତି, ଏବଂ ମୋତେ ବାରଂବାର ଦୁଃଖ ଦେଇଛନ୍ତି ! ଗ୍ରି—ଶେଷକୁ ବୁଝିବା ହେଉ ଯେ ବକ୍ତବ୍ୟ ଗଳ୍ପର ସାରସତ୍ୱ ସିନା, ସାରାଂଶ ନୁହେଁ । ତେଣୁ ନିଜ ଆଡୁ କି'ବା ଚରିତ୍ରର ମୁହଁରେ ତାକୁ ବଖାଣିବାର ଇଚ୍ଛାକୁ ଦମନ କର । ଇଂରେଜୀରେ ଗୋଟିଏ କଥା ଅଛି ଯେ "A good story does not have a moral, but is a moral ।" ସେମିତି ଉତ୍ତମ ଗପରେ ବକ୍ତବ୍ୟ ଥାଏ ବୋଲି କୁହ ନାହିଁ, ଉତ୍ତମ ଗପ ମାତ୍ରେ ହିଁ ବକ୍ତବ୍ୟ, ଦୃଷ୍ଟ-ଅନୁଭୂତ ଜୀବନକୁ ନେଇ । ଅତଏବ କାଳେ ପାଠକ ବୁଝି ପାରି ନ ଥିବ ବୋଲି ତାକୁ ଏଠି ସେଠି ଯୋଡ଼ି ଦେବାର ଚେଷ୍ଟା କରନାହିଁ । ଗଳ୍ପ ତା'ର ଆପଣା ଗୁଣରେ ଚହଟି ଉଠୁ ସାହିତ୍ୟ ହୋଇ । ଆଃ, ହେଲନାହିଁ ବୋଲି ଦୁଃଖ କରନାହିଁ । ଏଥର ନ ହେଲେ ବି ଆର ଥରକୁ କ'ଣ ତୁମେ ତାକୁ ସିଧା ରାସ୍ତାକୁ ନେଇ ଆଣି ପାରିବ ନାହିଁ ?

ତୃତୀୟ ପ୍ରଶ୍ନଟି ମଧ୍ୟ କିଛି କମ୍ ଗୁରୁତ୍ତର ନୁହେଁ । ଗପରୁ ଗପ ଯାଏଁ ଏଉଟି ମୋର ବକ୍ତବ୍ୟ ବୋଲି ଠଉରେଇଲେ କ'ଣ କଥା ଛିଣ୍ଡିଗଲା ? ସେଥିରେ ନୂତନତ୍ୱ ଥିବ ହିଁ ଥିବ ବୋଲି ଧରିନେଇ ହେବ ?

ନା, ବ୍ୟାପାରଟା ଏତେ ସହଜ ନୁହେଁ । କିଂତୁ ଆଜି ତା'ର ବିସ୍ତୃତ ଆଲୋଚନା କରିବା ପାଇଁ ସମୟ ନାହିଁ । ତେଣୁ ଆସନ୍ତା କିସ୍ତିର ଅପେକ୍ଷା କରିବା ପାଇଁ ଅନୁରୋଧ ।



ମୁଁ ଖାଲି ଗୋଟିଏ ଗପୁଡ଼ା ନୁହେଁ, ମୋର ବକ୍ତବ୍ୟ ଅଛି । ଏଇ ଦେଖୁନା' ଗତ ତିନି ବର୍ଷ ଭିତରେ ମୁଁ ଯେଉଁ ଗପ ଲେଖିଛି, ବିଭିନ୍ନ ସହର ମଫସଲରେ ବାସ କରୁଥିବା ନାନା ଚରିତ୍ରଙ୍କ ଗପ, ବିଭିନ୍ନ ସ୍ୱାଦୁର ଗପ, ସେଥିରେ କଅଣ ଗୋଟାଏ ବିଶିଷ୍ଟ ବକ୍ତବ୍ୟ ଝଲି ଉଠୁ ନାହିଁ ଯେ—ପ୍ରେମ ଆମର ଏଇ ସନାତନ ସଂସାରକୁ ବାଂଧି ରଖିଛି ? ବଂଚିବାରେ ମୂଲ୍ୟ ଆଣି ଦେଉଛି ?

ଯଦି ଜଣେ ଶ୍ରମକାତର, ହେଲେ ନୀତିବଦ୍ଧ (ଏବଂ ମିଷ୍ଟଭଷୀ) ଲେଖକ ଏହି ପ୍ରକାର ଏକ ଆବିଷ୍କାର କଲାପରେ ଆଗମରେ ଆଖି ବୁଜି ଦେଲା, ପରେ କେବେ ମନ ଖୁସିରେ ଏବଂ ଅନାୟାସରେ ଆଉ ଗୋଟିଏ ଗପ ଲେଖିବା ଯାଏଁ, ଆମେ କ'ଣ ତା'ର ସୁଖ ସହି ନ ପାରିଲା ପରି କହିବା—ଏତିକିରେ ହେଲା ନାହିଁ ବାବୁ, ଆହୁରି କଷ୍ଟ କରିବାକୁ ପଡ଼ିବ ? ଯେ ଏଭଳି ବକ୍ତବ୍ୟରେ ସେମିତି କିଛି ନୂତନତ୍ୱ ନାହିଁ ?

ହଁ, ମୋର ଆଶଂକା ଯେ ଯେତେ ଉଦାର ହେଲେ ମଧ୍ୟ ଆଧୁନିକ ବୁଦ୍ଧିବାଦୀ ପାଠକ କହିପାରେ ଯେ ଏଇ ଚିର ସୁଂଦର ପ୍ରେମତତ୍ତ୍ୱ ମୋର ମନୋ-ବୁଦ୍ଧିକୁ ଚିଆଇଁ ଚହଲେଇ ଦେଇ ପାରୁ ନାହିଁ । ନୂଖୁର ପରି ମନେହେଉଛି । ଗପରୁ ଗପ ଯାଏଁ ବାଛି ବସିବ :

—ଚରିତ୍ରବିଶେଷ ଏଭଳି କିଛି ଅପୂର୍ବ ସୁଖପ୍ରଦ ପରିସ୍ଥିତିର ପାଲରେ ପଡ଼ିଲା ନାହିଁ ଯେ ପ୍ରେମର ଦୁଃଖ ତାକୁ ସେଥିରୁ ଉଦ୍ଧାର କରି ଆଣିଲା ପରି ମନେ-ହେବ ଏବଂ କଥାଟା ନୂଆ ପରି ଲାଗିବ ।

—ବିଭିନ୍ନ ପ୍ରେମ (ବିଭିନ୍ନ ଗୁଣାତ୍ମକ ପ୍ରେମ ଯଥା:—ପତ୍ନୀପ୍ରେମ, ସଂତାନ ପ୍ରେମ, ଜାତିପ୍ରେମ, ଇତ୍ୟାଦି) ର ଭିଡ଼ାଓଟରା ଭିତରେ ଏଉଟି ଭଲ କି ସେଉଟି ଭଲ, କାହାକୁ ନେବି ଓ କାହାକୁ ଥା' ବୋଲି କହିବି, ଏଭଳି କିଛି ଧର୍ମସଂକଟ ଦେଖାଦେଇ ନାହିଁ ଯେ ଚରିତ୍ରଟି ଶେଷରେ ଯାହାକୁ ଆବୁରି ବସିଲା ସେଥିରେ ତା'ର ଦୟନୀୟ ବାହାଦୂରୀ ଫୁଟି ଉଠିବ ଓ କଥାଟା ନୂଆପରି ଲାଗିବ ।

—ଘଟଣାର ହଙ୍କାରେ ଓଲଟପାଲଟ ଓ ଚହଟ-ଚମକ ସତ୍ତ୍ୱେ ଚରିତ୍ର ତ ମୂଳରୁ ପ୍ରେମପ୍ରବଣ ବୋଲି ମନେହେଉଥିଲା । ତେଣୁ ସେ କୋଉ ନୂଆ ପାଠ ଶିଖିଲା ଯେ ଆମକୁ ଶିଖେଇବ, ଆଉ କଥାଟା ନୂଆପରି ଲାଗିବ ?

—ଏକାଭଳି ଦିଶୁଥିବା ବାଳୀ ସୁଗ୍ରୀବ, ମିଛ ପ୍ରେମ ଓ ସତ ପ୍ରେମ ଭିତରେ କୋଉ ଲଢ଼ାଲଢ଼ି ଧସ୍ତାଧସ୍ତି ହେଲା ଯେ ଲେଖକର ସାହାଯ୍ୟରେ ସଂତକଟିଏ ଆବିଷ୍କାର କରି ବାଳୀକୁ ଶର ପେଷି ହେବ ଓ କଥାଟା ନୂଆ ପରି ଲାଗିବ ?

— ପ୍ରେମ କେମିତି ଅହମିକାକୁ ଗ୍ରେରିକରି ନେଲା, ପ୍ରେମ କେମିତି ଶ୍ରେଣୀ-ସ୍ୱାର୍ଥରେ ଜରିଗଲା ଅନ୍ୟମନସ୍କ ହୋଇ, ପ୍ରେମ କେମିତି ସେକ୍‌ସ୍‌କୁ ଆଖିବୁଜି ଅଧିକାର କଲା......ତଥାପି ପ୍ରେମ ହିଁ ଜିତିଲା ବୋଲି କହିବାକୁ ହେବ, ଏଭଳି କୋଇ ଚମତ୍କାର ଦେଖିବାକୁ ମିଳିଲା ଯେ କଥାଟା ନୂଆପରି ଲାଗିବ ?

ଇତ୍ୟାଦି । ଇତ୍ୟାଦି । ପାଠକକୁ ଅଭୟ ଦେଲେ ସେ ଏମିତି କେତେ ପ୍ରଶ୍ନ ପଚାରିଯିବ । ଯାହାର ମୂଳକଥା ହେଲା ଯେ ପ୍ରେମର ମହତ୍ତ୍ୱ ସମସ୍ତଙ୍କୁ ଜଣା, ତେଣୁ ସେଥିରେ କିଛି ନୂତନତ୍ୱ ନାହିଁ । ନୂତନତ୍ୱ ରହିବ ଯଦି ଅନ୍ୟାନ୍ୟ ବାସ୍ତବତାର ମହତ୍ତ୍ୱ ସାଗରେ ତା'ର ସଂଘର୍ଷ ଘଟାଇହେବ ଏବଂ ଦେଖାଇ ହେବ ଯେ ଆମର ପୁରୁଣା-ପୋଚରା ପ୍ରେମ ବୋଧହୁଏ ମହତ୍ତର, ଅବା ତାକୁ ମହତ୍ତର ବୋଲି ମାନିବାକୁ ପଡ଼ିବ । ସେହିଭଳି ପ୍ରେମକୁ ପୁନରାବିଷ୍କାର କଲେ କଥାଟା ନୂଆପରି ଲାଗିବ, ଏବଂ "ସତ"ର ପଦ୍ମ ଯେତେ ଘୁଞ୍ଚି ଘୁଞ୍ଚି ଗଲେ ବି' ପାଖକୁ ଆସିଲା ପରି ମନେହେବ । ଆଶା କରା-ଯାଇ ପାରିବ ଯେ ଭବିଷ୍ୟତର ଲେଖକ ଭବିଷ୍ୟତର ପାଠକକୁ ସେଇ ବାଟରେ ନେଇ ଯାଇ ପାରିବ, କେବେହେଲେ ସେଇ ପାଜି ପଦ୍ମଟାକୁ ଧରିବା ଯାଏଁ ।

ରହ, ଏଇଠି ମୁଁ ସ୍ପଷ୍ଟକରି ଦେବାକୁ ଗ୍ରହେଁ ଯେ ଏଇ ବୌଦ୍ଧିକ ନବୀକରଣ ହିଁ ବକ୍ତବ୍ୟର ପିଣ୍ଡକୁ ପ୍ରାଣ ଯୋଗାଇ ପାରିବ ଏବଂ ଏତିକ ନ ହେଲେ ଗପ ସାହି-ତ୍ୟରେ ଗଣା ହେବ ନାହିଁ, ମୁଁ ସେକଥା କହୁନାହିଁ । ବକ୍ତବ୍ୟରେ ନୂତନତ୍ୱ ଆଉ କେତେ ଭାବରେ ଆଣିଦେଇ ହେବ । ଯଥା:—ଚେତନାଗତ ପୃଥିବୀର ସାଧାରଣ ବିସ୍ମୟକୁ ଅସାଧାରଣ ଏବଂ ଅସମ୍ଭାବିତ ବିସ୍ମୟର ସ୍ତରକୁ ନେଇଯାଇ ହେବ, ଭାଗବତ ପୃଥିବୀର ନୈସର୍ଗିକ ଦୁଃଖକୁ ଅସହନୀୟ ଦୁଃଖର ସ୍ତରକୁ ନେଇଯାଇ ହେବ......ଯେକୌଣସି ଅତ୍ୟନ୍ତକୁ ବାସ୍ତବର ରୂପଦେଇ ପାରିଲେ ଆବେଗର ପାରା ଏତେ ଉପରକୁ ଉଠିଯିବ ଯେ କଥାଟା ସତେ ନୂଆପରି ଲାଗିବ । ଏବଂ ତାହା ମଣିଷଦଶା ଉପରେ ଯଥାର୍ଥ

ଟୀପ୍‌ପଣୀ ନୁହେଁ, ତେଣୁ ତାକୁ ସାହିତ୍ୟ କୁହାଯିବ ନାହିଁ, ଏଭଳି ଦାବୀ କରିହେବ ନାହିଁ । ତା'ଛଡ଼ା ପୂର୍ବରୁ କୁହାଯାଇଥିବା କ୍ଲାଇମାକ୍‌ସର ଶେଷକଥା ସାମାନ୍ୟ ବ୍ୟବହାରିକ ଆକସ୍ମିକତା ଅବା ମୋଡ଼ଭଙ୍ଗାର କାରସାଦି ( twist )କୁ ଆଶ୍ରୟ କରି ନୂତନଧର୍ମୀ ବକ୍ତବ୍ୟର ଛଳନା କରି ପାରେ । ଏବଂ ଏଭଳି କେତେ ଚତୁର ଗପ ମଧ୍ୟ ସାହିତ୍ୟରେ ଗଣା ହୋଇଛି, କାରଣ ତା'ର ଶୈଳୀ ଏମିତି ଫୁସୁଲେଇବ ତୁମକୁ ଏବଂ ତା'ର ଶ୍ଳେଷୋକ୍ତି ଏଭଳି ଦୋମୁଣ୍ଡିଆ ଦିଶିବ ଯେ ଚତୁରତାରୁ ଗଭୀରତାର ଖିଅ ବାହାରିଲା ପରି ମନେହେବ । ଯଥା:—ସମର୍‌ସେଟ୍ ମ'ମ୍‌ଙ୍କ ଅଧିକାଂଶ ଗପ । କିନ୍ତୁ ଚତୁରତା ଓ ଗଭୀରତା ଦୁଇଟି ଭିନ୍ନ ଭିନ୍ନ ବସ୍ତୁ, ଯେଉଁଥିପାଇଁ ସମର୍‌ସେଟ୍ ମ'ମ୍‌ଙ୍କୁ ମଧ୍ୟ "first among second raters", ଦ୍ୱିତୀୟ ଦର୍ଜାରେ ପ୍ରଥମ ବୋଲି କୁହାଯାଏ ।

ଯାହାହେଉ ଇଏ ହେଉଛି ମୋର ବ୍ୟକ୍ତିଗତ ମତ (ସେଥିପାଇଁ ହୁଏତ ମୋର ନିଜସ୍ୱ ସାପେକ୍ଷତା ଦାୟୀ) ଯେ ଚେତନାରୁ ତଥା ଭବଭବନାରୁ ବଳି, କିନ୍ତୁ ସେଥିର ଆନ୍ତରିକ ଏବଂ ଅନ୍ତରଙ୍ଗ ଆବେଗକୁ ମାନି ନେଇଥିବା, ଗଭୀର ବୌଦ୍ଧିକତା ଅର୍ଥାତ୍ ଚିନ୍ତାଶୀଳତାର ସ୍ତରରେ ହିଁ ନୂତନଧର୍ମୀ ବକ୍ତବ୍ୟର ଶ୍ରେଷ୍ଠ ସଫଳତା ଆସି ପାରିବ । ତାହା ହିଁ ପାଠକର ମନୋବୁଦ୍ଧିକୁ ଚିଆଁଇ, ଚହଲାଇ, ହୁଏତ ଛଟପଟ କରି ଏକ ଅନନୁଭୂତି ଆନଂଦ ଆଣିଦେଇ ପାରିବ, ଯାହା ସାହିତ୍ୟସୁଖର ଚରମ ଅନୁଭବ ବୋଲି ମୁଁ ମନେକରେ ।

ତେଣୁ ମୁଁ ଯଦି ଉପରୋକ୍ତ ଲେଖକର ପାଠକ ହୋଇଥାଆନ୍ତି, ମୁଁ ତା'ର ପ୍ରେମମୂଳକ ବକ୍ତବ୍ୟକୁ ନେଇ ଏହି ପ୍ରକାର ଅନେକ ଅଖାଡୁଆ ପ୍ରଶ୍ନ ପଗ୍ରରନ୍ତି ଓ ତାକୁ ଆହୁରି କଷ୍ଟ ସ୍ୱୀକାର କରିବାକୁ କୁହନ୍ତି, ମୋ ପରି ନଛୋଡବଂଧା ଅସନ୍ତୋଷିଆ ପାଠକର ବାହାବା ପାଇବା ପାଇଁ ।

ହଁ, ତାକୁ ବେଶ୍ କିଛି କଷ୍ଟ କରିବାକୁ ପଡ଼ିବ । କ୍ଲେଶ ଅନିବାର୍ଯ୍ୟ, କାହିଁକିନା ତାକୁ (୧) ତା'ର ଦୃଷ୍ଟିକୁ (ବିଶେଷତଃ ଅନ୍ତର୍ଦୃଷ୍ଟିକୁ) ଆହୁରି ଆହୁରି ଗହୀରକୁ ନେଇଯିବାକୁ ପଡ଼ିବ, ନରମିଆ ମର୍ମ ଅବା ସହଜିଆ ସିଦ୍ଧାନ୍ତକୁ ବିନ୍ଧିବା ଯାଏଁ, (୨) ଜଟିଳତାର ଗଣ୍ଠିକୁ ଝାଳନାଳ ହୋଇ ଖୋଲିବାକୁ ପଡ଼ିବ, ଯଦିଓ ତାକୁ ପୂରାପୂରି ଖୋଲିହେବ ନାହିଁ, (୩) ଜଟିଳତାବୋଧରୁ ବଢ଼ି ବଢ଼ି ଯାଇଁ ସୃଷ୍ଟିର ରହସ୍ୟକୁ ଏବଂ କେଉଁ ବାଟରେ ହେଲେ ଜୀବନ-ବନାମ-ମୃତ୍ୟୁର ଅନ୍ତିମ ରହସ୍ୟକୁ ଛୁଇଁବାକୁ ପଡ଼ିବ

ଏବଂ (୪) ତଥାପି, ଅର୍ଥାତ୍ ହାରିଗଲେ ମଧ୍ୟ ନିଜକୁ ତଥା ପାଠକକୁ ଖୁସ୍‌କରିବାକୁ ପଡ଼ିବ, ସତେ କିଛି ଧନ ପାଇଲା ପରି, କିଛି ନୂଆ କଥା ଶୁଣେଇଲା ପରି ।

ଗହୀରକୁ ଯିବାର କେବଳ ଗୋଟିଏ ଉପାୟ । ଆପଣାକୁ ନିରେଖି ଦେଖିବା ଓ ଚିହ୍ନିବା । କାରଣ ପ୍ରକୃତପକ୍ଷେ କେବଳ "ମୋତେ"ହିଁ "ମୁଁ" ଜାଣିଛି (ମୋତେ ଜାଣିବା ଉଚିତ) ଅନ୍ୟମାନଙ୍କଠାରୁ ବେଶି । ଅଥଚ ଆମେ ଖାଲି ଅପର ଅନ୍ୟ ଲୋକ- ମାନଙ୍କୁ ବିଭିନ୍ନ ଧରଣର ପୋଷାକ ପିଂଧେଇ ଦେଉ ଭିନ୍ନତାର ସ୍ୱାଦୁ ପାଇବା ପାଇଁ ଏବଂ ତରବରିଆ ଲେଖକ ସେଇମାନଙ୍କୁ ସଜେଇଦିଏ ଚରିତ୍ର କରି । କ୍ଷତି ନାହିଁ । ଚିଡ଼ିଆଖାନାର ସେଇ ହରରଂଗୀ ପଶୁପକ୍ଷୀମାନେ କ'ଣ ଆପଣା ଆପଣା କାକଳିକୂଜନ ହମ୍ବାହେଣ୍ଟାଳ ଦ୍ୱାରା ଆନଂଦ ଦେଇ ପାରିବେ ନାହିଁ ? ଅବଶ୍ୟ ଦେବେ । କିଂତୁ ସିଏ ହେଲା ଉପରଠାଉରିଆ ବୈଚିତ୍ର୍ୟର ଆନଂଦ । ତା'ଠାରୁ ବଳି ଆନଂଦ ମିଳନ୍ତା ଯଦି ବାଘଠାରେ କିଂଚିତ୍ ବିଲୁଆର, କିଂଚିତ୍ ମେଣ୍ଢାର, ମୟୂରଠାରେ କିଂଚିତ୍ କପୋତର, କିଂଚିତ୍ ଡାହୁକର ରୂପଗୁଣ ଦେଖେଇଦେଇ ହୁଅନ୍ତା । ଇଏ କେମିତିକା କଥା ବୋଲି ପଚାରୁଛ ? ଜାଣିବାକୁ ହେଲେ ନିଜକୁ ଦେଖ, ଯାହା କଷ୍ଟକର, ବେଳେବେଳେ ଭୟା- ନକ, ତେଣୁ ସବୁବେଳେ ତୁମେ ସେଇ "ଅନାବଶ୍ୟକ" କାମରୁ ଦୂରେଇ ରଖିଛ ନିଜକୁ । କିଂତୁ ନିର୍ମମ ନିରଳସ ହୋଇ ନିଜକୁ ନିରେଖିଲେ ତୁମେ ଯେଉଁ ବୈଚିତ୍ର୍ୟର ସନ୍ଧାନ ପାଇବ, ଏକା ଘଟରେ(ଏକା ଘଟରେ)ନାନା ପଶୁପକ୍ଷୀଙ୍କ କଳରୋଳ—ସେଇ ତ ଚରିତ୍ରର ଗନ୍ତାଘର ! କେବଳ ସେଇ ବାଟେ ଅପର ମାନସର ଗହୀରକୁ ଯାଇହେବ, ପୂର୍ବନିର୍ଦ୍ଦିଷ୍ଟ ବାଘଠାରେ ବିଲୁଆର......ଇତ୍ୟାଦି ଇତ୍ୟାଦି ବାସ୍ତବର ହୁଂଦର ଦେଖାଇ ହେବ । ସେଇଠୁଁ ତୁମ ବକ୍ତବ୍ୟରେ ଯେଉଁ ନୂତନତ୍ୱ ଆସି ଦେଖାଦେବ, ତା'ର ମୂଲ୍ୟ ସହଜେ ସାଧାରଣ ହୋଇ ପାରିବ ନାହିଁ । ବରଂ ତୁମେ ହିଁ ତାକୁ ସହି ନ ପାରିଲା ପରି ସାମାନ୍ୟ ସାଧାରଣ କରିବା ପାଇଁ ବ୍ୟସ୍ତ ହୋଇ ଉଠିବ । ଯେତେବେଳେ ବୁଝିବ ଯେ ତୁମକୁ "ବିଂଧୁଛି" । ବେଶ୍, ଏଣିକି ଆହୁରି ଦୂରକୁ, ଭିତରକୁ ଯିବା ପାଇଁ ଚେଷ୍ଟାକର ନାହିଁ । ଏକାଦଶ କିସ୍ତିରେ ଏଇ ଦୁରନ୍ତ ଅଭିଳାଷ ବିଷୟରେ ସାବଧାନ କରେଇ ଦେଇଛି, ତେଣୁ ତାକୁ ଦୋହରେଇବା ଦରକାର ନାହିଁ । କିନ୍ତୁ ଏଇ ଯାଏଁ କ'ଣ କମ୍ ହେଲାଣି ?

ଯେଉଁ ମନଟା ଏତେ ବିଚିତ୍ର, ତାକୁ କୋଉ ବୁଦ୍ଧିରେ ସରଳ, ଅର୍ଥାତ୍ ସହଜରେ ଦିଶିଯାଉଛି, ପଢି ହେଉଛି, ବୁଝି ହେଉଛି ବୋଲି କହିବ ? ବିଚିତ୍ରାକୁ କ'ଣ

ଅଜବ୍ ହେଲେ ମଧ୍ୟ ସ୍ଥାଣୁ ଏବଂ ସୁରକ୍ଷିତ ବିବିଧ ମଣିମୁକ୍ତାର ମାଳାଟିଏ ବୋଲି ଭାବିଛ ? ନା, ସେମାନେ ଆଦୌ ଖଂଜାହୋଇ ରହି ନାହାନ୍ତି । ଗୁହିଁଲେ ବି' ରହି ପାରିବେ ନାହିଁ, କାରଣ ସେମାନେ ଅନୁରୂପ ଅଜବ୍ ଅପରଜନ ନେଇ କାରବାର ହେବାକୁ ବାଧ୍ୟ । ତେଣୁ ପାରସ୍ପରିକ ସମ୍ପର୍କର ଘାତପ୍ରତିଘାତ, ଖେଳ ତଥା ଗଣ୍ଡ-ଗୋଳ, ଅନିବାର୍ଯ୍ୟ । ନୀତି, ପ୍ରବୃତ୍ତି, ସମାଜ, ସଂସ୍କାର ଆଦିକୁ ନେଇ ସମ୍ପର୍କର ଦିଆନିଆ, ଖୁଂପାଖୁଂପି, ତଥା ଲୁଗ୍ରଗ୍ରେଗ । ଫଳରେ ବିଚରା ଲେଖକର ଘରେ ଯେତେକ ଜଟିଳତା : ଏଇଟି କ'ଣ ବୋଲି ଠଉରେଇବାର କ୍ଳେଶ ଓ ମୁହୂର୍ତ୍ତ ବିଶେଷରେ ସତେ ଜାଣି ପକେଇବାର ଅସ୍ଥାୟୀ ଉଲ୍ଲାସ । ଏବଂ ଯେଉଁଠି ମୃତ୍ୟୁ ଆସି ପହଂଚିଯାଏ ମଝିରେ, ସେଠି ଜଟିଳତା ଆହୁରି କିମ୍ଭୂତକିମାକାର ହୋଇଉଠେ, ତାକୁ ତୁଲେଇବା ସହଜ ନୁହେଁ ।

ଏଇଠି ଗୋଟିଏ ସରଳ ସମ୍ପର୍କର ଜଟିଳତା ମନେପଡ଼ୁଛି । କାମ୍ୟୁଙ୍କ ଗପ । ଗପ ନୁହେଁ, ତାଙ୍କ ଉପନ୍ୟାସର ଗୋଟିଏ ସ୍ୱୟଂ ସମ୍ପୂର୍ଣ୍ଣ ଅଧ୍ୟାୟ । ପୁଅ ମାଆର ମୃତ୍ୟୁ ଖବର ଶୁଣି ଯାଇଥିଲା ତା'ର ଶେଷକୃତ୍ୟରେ ଯୋଗଦେବା ପାଇଁ । ପୁଅ ମାଆକୁ ଅବଶ୍ୟ ଭଲପାଏ । ପୂର୍ଣ୍ଣଚ୍ଛେଦ । କିଂତୁ ତା'ର କଡ଼େ କଡେ କେତେଗୁଡ଼ିଏ ବାସ୍ତବ ଅନୁଭୂତିର କଥା ହାବୁଡ଼ି ଯାଉଛି, ଯାହାକୁ ପୁଅଟା ବୁଝିପାରୁ ନାହିଁ, ହେଲେ ଲେଖକ ତା'ର ଅସଂଗତିକୁ ଦେଖେଇ ଗ୍ଲାଲିଛି । ଯଥା:—ତାକୁ ଏମିତି ଅସ୍ଥିର ଲାଗୁଛି କାହିଁକି ଫେରିଯିବା ପାଇଁ, ସତେକି ଏହାଠାରୁ ବଳି କେତେ ଦରକାରୀ କାମ ବାକୀ ପଡ଼ିଛି ସିଆଡ଼େ ? କଫିନ୍‌ର ଢ଼ାଂକୁଣି ଖୋଲି ମାଆର ମୁହଁକୁ ଶେଷଥର ପାଇଁ ଦେଖିବାକୁ ଇଚ୍ଛା ହେଉଛି, ହେଲେ ଡର ମାଡୁଛି କାହିଁକି ? କାଳେ ଭାଂଗି ପଡ଼ିବ ବୋଲି ସେ ଶେଷକୁ ଦେଖିଲା ନାହିଁ ତା'ମୁହଁ, ତା' ବୋଲି ସେ କ'ଣ ମିଛ କହିଲା ନିଜକୁ ? ଇସ ! ବାର୍ଦ୍ଧକ୍ୟ ଭବନ (Old Age Home), ଯେଉଁଠି ମାଆର ମୃତ୍ୟୁ ହେଲା, ତା'ର ବୁଢ଼ା-ବୁଢ଼ୀମାନେ କେତେ ବୁଢ଼ାହଡ଼ା ଓ କୁତ୍ସିତ ଦେଖାଯାଉଛନ୍ତି । ହେଲେ ତାଙ୍କରି ଭିତରୁ ଜଣେ ରେଗିଣା ବୁଢ଼ା ଖରାରେ ଧଇଁସଇଁ ହୋଇ ଆସିଛି ସମ-ବୟସୀର ଶେଷକୃତ୍ୟ ଦେଖିବା ପାଇଁ, ଝାଳନାଳରେ ଲୁହ ମିଶିଯିବାରୁ ସେ ଆହୁରି ବିକଟାଳ ଦିଶୁଛି । ଏଇଠି ଲେଖକଙ୍କର ବକ୍ତବ୍ୟ ପ୍ରକଟିତ ହେଲା—ୟେ' ବି କ'ଣ ଗୋଟାଏ ଭଲପାଇବା ନୁହେଁ ? ନା, ୟାକୁ ଅସୁଂଦର କହିବ ? ଯାହାହେଉ ପୁଅ ଫେରିଆସି ଦିବ୍ୟ ଶୋଇଗଲା ଦିନଟାଯାକ । ବିଚରା !

ଏଇ ଗପରେ କେତେ ଜଟିଳତାର ଗଣ୍ଠି ପଡ଼ିଛି ଯାହାକୁ ସହଜେ ଖୋଲି ହେବ ନାହିଁ, କିଂତୁ ଛାଡ଼ିଦେଲେ ଚଳିବ ନାହିଁ । ନାନାଦି ଭୟ, ହୁଏତ ଘୃଣା ଏବଂ ଆତ୍ମଶଠତାରେ ବିପର୍ଯ୍ୟସ୍ତ ଏଇ ଗପର ଗଣ୍ଠିହାର । କିଂତୁ ପ୍ରେମ ଅଛି, ଅଛି, ଅଛି । ଅଛି ତା'ର ମହାମହନୀୟତା । ମନେହେବ ଜଟିଳତା ମାଡ଼ଖାଇ ଫେରିଆସିଛି ତା' ଘରକୁ, ଏକକ ସରଳର କୋଳକୁ ! ହେଲେ ମଝିରେ ଏଇ "ନୂଆ କଥା"ର ଭେଳିକି ।

ବୌଦ୍ଧିକତା ଜିତିଲେ ଅବା ଥକିଗଲେ ସବୁ ଜଟିଳତା ଆପେ ଆପେ ବୋଧ-ହୁଏ ସରଳ ହୋଇଯାଆନ୍ତା । କିଂତୁ ଦୁଃଖର ବିଷୟ ସେ ଜିତେ ନାହିଁ କି ଥକିଯିବାକୁ ଚାହେଁ ନାହିଁ, କାଳେ ଥକିଯିବାର ମାନେ ହେବ ହାରିଯିବା । କାରଣ ଜୀବନର କୌଣସି ସ୍ପଂଦନ ଶୁଦ୍ଧ ନୁହେଁ, ସ୍ବାଧୀନ ନୁହେଁ; ପ୍ରତ୍ୟେକଟି ଛୁଆଁ । ଜୀବନମୃତ୍ୟୁର ରହସ୍ୟରେ ଛୁଆଁ । କାମ, କ୍ରୋଧ, ଲୋଭ ଆଦି "ଖରାପ" ଗୁଣ, ତଥା ପ୍ରେମ, ଶ୍ରଦ୍ଧା, ଭକ୍ତି ଆଦି "ଭଲ" ଗୁଣ, କେଉଁଥିରେ ଏଭଳି ତେଜ ନ ଥାଆନ୍ତା କି ଏତେ ଛଂଦମଂଦ ନ ଥାଆନ୍ତା, ଯଦି ମଣିଷ ଭାବନ୍ତା ଯେ ଜୀବନଟା ଚାଲିଥିବ ଏମିତି । କିଂତୁ ଚାଲିଥିବ ନୁହେଁ, ଚାଲିଯିବ, କୁଆଡୁ ଆସିଲା କୁଆଡ଼େ ଯିବ "ଭଗବାନ ଜାଣନ୍ତି", ଏଇ ଚେତନାର ସ୍ପର୍ଶ ତା'ର ପ୍ରତ୍ୟେକ ବିଚାରକୁ ଭଙ୍ଗୁର କରିଦିଏ । ହେଲେ ମଜା ହେଉଛି ଯେ ଏହା ହିଁ ଜୀବନରେ ରଂଗ ଆଣିଦିଏ । ଭଂଗୁରତାକୁ ଧରି ରଖିବାର ରଂଗ । ଏବଂ ଏଇଥିରୁ ଆସେ ସୃଜନର ତାଡ଼ନା, କଳା ସଙ୍ଗୀତ ସାହିତ୍ୟ ଆଦି ଅନାବଶ୍ୟକ (ଅସ୍କାର୍ ଓ୍ୱାଇଲ୍ଡ଼ଙ୍କ ଭାଷାରେ ନନ୍‌ସେନ୍‌ସ)ର ଆବଶ୍ୟକତା । ଏଇ ପରିପ୍ରେକ୍ଷୀରେ ହସ ଲାଗିବା କଥା ଯେତେବେଳେ ଫ୍ରାନ୍‌ସୁଆ ସାଗାନ୍‌ଙ୍କ ପରି ଜଣେ ଲେଖକ ଦାବୀକରି ବସେ ବାସ୍ତବକୁ ଚମକେଇ ଦେବା (to take reality by surprise) ହିଁ ଲେଖକର ଧର୍ମ । ଯେ ସବୁଠାରୁ ଅସଲ ବାସ୍ତବର ଅର୍ଥ ଜାଣେ ନାହିଁ, ସେ ପୁଣି ବାସ୍ତବତାକୁ ପାଠ ପଢ଼େଇବ ! ବରଂ କବି ଡବ୍‌ଲ୍ୟୁ ବି. ୟିଟ୍‌ସ୍‌ଙ୍କ କଥାରେ ମୁଣ୍ଡ ନୁଆଁଇଁ ହଁ ଭରିବାକୁ ମନହୁଏ, ଯେ ଜୀବନକୁ ପ୍ରଥମେ ଟ୍ରାଜେଡ଼ି ବୋଲି ଅନୁଭବ କଲେ ଯାଇଁ, ମୋତେ ମାର୍ ନା ମୁଁ ମଲିଣି ବୋଲି କହିଲା ପରେ ଯାଇଁ, ତା'ର ଉପଭୋଗ କରିହେବ । ଏବଂ ସୃଜନ ଏଇ ଉପଭୋଗର ଦାୟାଦ । ଯାହାହେଉ ବହପର ଛଳନାରେ ହେଉ ବା ପରାଜୟର "ଉପଭୋଗ"ରେ କେଉଁ ବାସ୍ତବତାର ଶିଳ୍ପୀ ଏଇ ରହସ୍ୟର ପାଖ ମାଡିବ ନାହିଁ, ଅଥଚ କହିବାକୁ ସାହସ କରିବ ଯେ ମୁଁ ମୋ ବକ୍ତବ୍ୟରେ ଗୋଟାଏ 'ନୂଆ କଥା' ଖଂଜି ଦେଇଛି ? ମୋ ମତରେ ବ୍ୟକ୍ତିଚେତନା,

ସମାଜଚେତନା, ବା ଯେକୌଣସି ଚେତନ ଅନୁଭୂତିର ଗାଣ୍ଠିକ ଏଇ ରହସ୍ୟ ପ୍ରତି ଯେତିକି ସଜାଗ ହୋଇ ପାରିବ, ତା'ର ବକ୍ତବ୍ୟ ସେତିକି ସମୃଦ୍ଧ ହେବାର ସମ୍ଭବନା ଅଛି—ଅବଶ୍ୟ ଯଦି ସେ ଦାର୍ଶନିକତାରେ ଭସିଯାଇ ଗଳ୍ପର ଅନ୍ୟାନ୍ୟ କଳାତ୍ମକତା ଓ କାରିଗରିର ଆଇନ୍‌କାନୁନ୍‌କୁ ପାସୋରି ନ ଯାଏ ।

ହାରିଗଲେ ମଧ୍ୟ ନିଜକୁ ଏବଂ ପାଠକକୁ ଖୁସ୍ କରିବାକୁ ହେବ, ଏହି ଆପେକ୍ଷ ସବୁ ଲେଖକଙ୍କ ପ୍ରତି ପ୍ରୟୋଗ କରିବା ଅନୁଚିତ । କେତେକ ଲେଖକ ହୁଏତ ପ୍ରକୃତରେ ଭବନ୍ତି ଯେ ଏଇ ହାରିବାକୁ ଠିକ୍ ହାରିବା ବୋଲି କୁହାଯିବ ନାହିଁ । ବୀରବର ସନ୍ଦେହପୋଷଣ କରେ ଯେ ଘୋର ବିଭ୍ରାନ୍ତିର ମାଧ୍ୟମରେ ସେ (ତା'ର ଚରିତ୍ର) ଅନ୍ତତଃ ଇଂଚେ ଉପରକୁ ଉଠି ପାରିଛି, ଅନ୍ତତଃ ଚେନାଏ ଆଲୁଅର ଦର୍ଶନ ପାଇ ପାରିଛି—ଆକାଶର ସୂର୍ଯ୍ୟ ଆଉ ଏମିତି କେତେ ଦୂରରେ କି ? ଉଭୟ ବର୍ଗର ଲେଖକ ବୁଦ୍ଧିବାଦୀ, ସତ୍ୟବାଦୀ ଏବଂ ଆଧୁନିକ । ଏମାନେ ତାଙ୍କ ପୂର୍ବଜମାନଙ୍କ ପରି ଗୋଟାଏ ସରଳରେଖା ଟାଣି ପାରିବେ ନାହିଁ କାରଣରୁ କ୍ରିୟା ଯାଏଁ ପୁଣ୍ୟରୁ ସୁଖ ଯାଏଁ ପାପରୁ ଦୁଃଖ ଯାଏଁ । ଏବଂ ଦୃଢ଼ଭବରେ କହି ପାରିବେ ନାହିଁ ଯେ ଏଇ ହେଲା ରାମ, ଏଇ ହେଲା ରାବଣ, ଏବଂ ବ୍ରହ୍ମାଣ୍ଡ ଏଇଠି ମିଳିବ । ଏବଂ ତାଙ୍କ ବୁଝିବାରେ ବାକୀ ନାହିଁ ଯେ ମୂଳକଥାର ରହସ୍ୟ ଯେଉଁଠି ଥିଲା ସେଇଠି ଥୁଣ୍ଟାହୋଇ ବସି ରହିଛି ଯୁଗ ଯୁଗ ଧରି । ଅତଏବ ବୁଦ୍ଧିବାଦୀ, ସତ୍ୟବାଦୀ, ଏବଂ ଆଧୁନିକ କଥାକାର ଗୋଟାଏ ଚମତ୍-କାର ଉପାୟ ଅବଲମ୍ବନ କରେ ତା'ର ବକ୍ତବ୍ୟକୁ ଶୁଣାଇବା ପାଇଁ । ଶ୍ଳେଷ (irony) । ଅଜ୍ଞତାର ଶ୍ଳେଷ । ବିଜ୍ଞତାର ଶ୍ଳେଷ । କିଂତୁ ସେଥିରେ ନିଛକ୍ ଚତୁରତା ନୁହେଁ, ଯାହାର ଉଲ୍ଲେଖ ପୂର୍ବରୁ କରିଛି, ବିନୟୀ ଆନ୍ତରିକତାର ଅସ୍ପଷ୍ଟ ଆବେଦନ ଶୁଣିବାକୁ ମିଳେ । ଅର୍ଥାତ୍ ସେ ଏମିତିଭବରେ ମୁରୁକି ହସା ଦିଏ, ଆଖିମିଟିକା ମାରେ ଖନି ଖନି କଥା କୁହେ, ଯେ ପାଠକ ତା'ର ବକ୍ତବ୍ୟକୁ ପ୍ରକାଶ୍ୟ ପ୍ରକଟିତ ଅର୍ଥରେ ଗ୍ରହଣ କରିନେଇ ପାରେ ନାହିଁ । ଭବି ବସେ ତା'ର ଶବ୍ଦ ଯାହାହେଉ ପଛେ ସେଥିରେ ଲୁଚିଥିବା ଧ୍ୱନି କେଉଁ ପ୍ରକାର, ତା'ର ଗତି କେଉଁ ଦିଗକୁ । ନୂଆ କଥାର ନୂତନତ୍ୱ ଏଇଯାଏଁ ସିନା, ତା'ର ଠାର କେଉଁଯାଏଁ । ସତେକି ଯାଦୃଶୀ ଭବନାର ପାଠକ ତାଦୃଶୀ ସିଦ୍ଧିଲଭ କରୁ, ଏହା ହିଁ ବାଗ୍‌ଦେବୀଙ୍କ ବରଦ୍ । ସେ ଭବିଲେ ଭବୁ ଯେ ଲେଖକ ମୋ ପରି ଅଜ୍ଞ, ସେଇଥିପାଇଁ ସେ କିଛି ଠିକଣା କରି କହି ପାରିଲା ନାହିଁ । ଅବା ମନେକରୁ ଯେ ଲେଖକ ବିଜ୍ଞତାର ପରିଚୟ ଦେଇଛି, ତା'ର ଅନୁଭବୀ ଦର୍ଶନ ଏତେ

ସୂକ୍ଷ୍ମ ଓ ଗଭୀର ଯେ ସେ ତାକୁ କେବଳ ଇଂଗିତରେ ପ୍ରକାଶ କରି ପାରିଛି...ତେବେ ବୁଝି ହେଉଛି ଯେ ଇଏ ଦକ୍ଷିଣାୟନ ନୁହେଁ, ଉତ୍ତରାୟଣ । ବକ୍ତବ୍ୟରେ ଉଚ୍ଚତମ ବୌଦ୍ଧିକ ଆନଂଦ ଆଣିଦେବାକୁ ହେଲେ ତୁମେ କ'ଣ ଏଇ ଶ୍ଳେଷର ଅସହାୟ କୌତୁକ ତଥା ସନ୍ଦିଗ୍ଧତା, ଯୁଧିଷ୍ଠିରସମ୍ମତ ସତ୍ୟବାଦିତାରୁ ଉଧୁରି ଯାଇ ପାରିବ ?

ଏଇଠି ଗୋଟିଏ ନିଜକଥା କହିବାକୁ ପଡୁଛି । ଯାହା ହୁଏତ ମୋର ଭାରତୀୟତାର "ଦୋଷ" । ଶ୍ଳେଷର ଅଜ୍ଞତା-ବିଜ୍ଞତାକୁ ମୁଁ ମଧ୍ୟ ଆଦରି ନେଇଛି । କିଂତୁ ମୋର ବିଶ୍ୱାସ ଯେ ମୋ ଆଖିମିଟିକା ଉତ୍ତରକୁ, ଉତ୍ତରଣକୁ, ଏବଂ ପାଠକ ସେତିକି ବୁଝି ପାରିବ । ଅଧିକନ୍ତୁ ମୋର ଧାରଣା ଯେ ଲେଖକ ମାତ୍ରେ ହିଁ କରୁଣାରେ କିଣା, ସେ ତାକୁ ଯେଉଁଭାବରେ ପ୍ରକାଶ କରୁନା କାହିଁକି । ତେଣୁ ସେ ବିପରୀତ ଦିଗର ଦିଗ୍‌ଦର୍ଶକ ହୋଇ ନପାରେ । ସେ ଲେଖୁଛି ଏହାର ଅର୍ଥ ସେ କହିବାକୁ ଚାହେଁ ଯେ ଦୟନୀୟ ମଣିଷ ଦଶାରେ ଅଛି କିଛି କହିଲା ଭଳିଆ, କିଛି ମାନମହତ ଏବଂ ଭବିଷ୍ୟତ । ଏହେତୁ ମୁଁ ଏଚ୍. ଏଚ୍. ମନ୍‌ରୋ (ସାକୀ), ଏବଂ ତାଙ୍କ ପରି କେତେକ ପାଶ୍ଚାତ୍ୟ ଲେଖକଙ୍କ ଅନୁସରଣ କରି କହି ପାରିବି ନାହିଁ ଯେ ପ୍ରେମଠାରୁ ଘୃଣା ଅଧିକ ସତ, ଅହିଂସାଠାରୁ ହିଂସା ଅଧିକ ସୁଖଦାୟକ ଇତ୍ୟାଦି । ସେଇଲାଗି ଦ୍ୱାଦଶ କିସ୍ତିର (କ), (ଖ) ଓ (ଗ) ଭିତରେ ମୁଁ (ଖ)ର ପକ୍ଷପାତୀ । ଯେ ଜୀବନଟା ଖାଲି ପିତା ନୁହେଁ । ପିତାର ଅର୍ଥ ମିଠା ଏଭଳି ଉପଲବ୍ଧି ମଧ୍ୟ ମୋ ଭାଗ୍ୟରେ ନାହିଁ । କିଂତୁ ମୁଁ କହିବାକୁ ଚାହେଁ ଯେ "ଏଇ ତିକ୍ତତାରେ ଯେଉଁ ଅତି-ଅନୁଭବର ଉଦ୍ଦୀପନା ଅଛି, ଏହାର କଡ଼େ କଡ଼େ ଯେଉଁ ମଧୁରତା ଅଛି, ତା'ର ବାସ୍ତବତାକୁ ମଧ୍ୟ ଅସ୍ୱୀକାର କରିବାର ନୁହେଁ ।" ଏବଂ ଏଇ ବିଶ୍ୱାସର ବଶବର୍ତ୍ତୀ ହୋଇ ମୁଁ କହି ପାରିଲି ନାହିଁ ଉକ୍ତ କିସ୍ତିର ଲେଖାରେ ଯେ ଗାନ୍ଧିକର ଜୀବନଦର୍ଶନରେ ଘୃଣା ମଧ୍ୟ ଅନ୍ୟତମ ସତ୍ତାଧାରୀ ରଂଗ ହୋଇପାରେ । ଘୃଣା ବଦଳରେ କହିଲି 'ଅପ୍ରେମ' ! ଛାଡ଼, ତୁମେ ଯଦି ଏଇ ଭାରତୀୟତାରୁ ମୁକ୍ତବୋଲି ମନେକରୁଥାଅ ନିଜକୁ, ତା'ହେଲେ ମୋର ଆପତ୍ତିର କାରଣ ନାହିଁ ।

ଯାହାହେଉ ପଛେ ସନ୍ଦେହ ନାହିଁ ଯେ ଗାନ୍ଧିକର ବକ୍ତବ୍ୟ ଓ ତହିଁରେ ନୂଆ କଥା ଯୋଗାଇବାର ପରିପ୍ରେକ୍ଷୀରେ ମୁଁ ମନୋବୁଦ୍ଧିକୁ ସର୍ବୋଚ୍ଚ ସିଂହାସନରେ ବସେଇଛି । କିନ୍ତୁ ହାୟ ! ଆଧ୍ୟାତ୍ମ ସନାତନ ଭାରତ ଏଇ ମନୋବୁଦ୍ଧିକୁ ହିଁ ଅସଲ ଦୋଷୀ ବୋଲି ଠଉରେଇଛି । ଗୀତାରେ ଶ୍ରୀକୃଷ୍ଣ କହିଲେ—

ଇନ୍ଦ୍ରିୟାଣି ମନୋବୁଦ୍ଧିରସ୍ୟାଧିଷ୍ଠାନମୁଚ୍ୟତେ
ଏତୌ ବିମୋହୟ ତ୍ୟେଷ ଜ୍ଞାନମାବୃତ୍ୟ ଦେହିନମ୍ ।

ଶଇତାନ୍ କାମନା ଖାଲି ଇନ୍ଦ୍ରିୟରେ ନୁହେଁ, ମନୋବୁଦ୍ଧିରେ ମଧ୍ୟ ଘର କରିଛି । ଜ୍ଞାନକୁ ଘୋଡ଼େଇ ରଖିଛି । ହେଲେ ବୁଦ୍ଧିବାଦୀ, ସତ୍ୟବାଦୀ ଏବଂ ଆଧୁନିକ ଲେଖକ ହିସାବରେ ତୁମେ ଓ ମୁଁ କ'ଣ ଏତେ 'ଭାରତୀୟ' ହୋଇ ପାରିବା ? ଅବଶ୍ୟ ଜ୍ଞାନୀ ହେବାର ବାଟ ଦିଶି ଯାଉଥିଲେ ସେ କଥା ଭିନ୍ନ । କୋଉ ଲେଖକ-ପଣିଆ ତା' ପାଙ୍ଗରେ ପଡ଼ିବ ?

ବର୍ଷେହେଲା ଚାଲିଥିବା ମୋ କଥାଟି ଏଇଠି ସରିଲା ଜାଣ । 'ପାଠ' ହିସାବରେ ମୋର ଆଉ କିଛି କହିବାକୁ ନାହିଁ । ଅବଶ୍ୟ କହିବାକୁ ବସିଲେ ରାତି ପାହିଯିବ, ସେଥିପାଇଁ ସମୟ ନାହିଁ କି ତୁମର ଧୈର୍ଯ୍ୟ ନ ଥିବ । ହେଲେ ଆଗାମୀ କିସ୍ତିରେ ହିଁ ଇତିଶ୍ରୀର ଖଡ଼ି ବୁଲେଇବି, କାହିଁକିନା ବିଦାୟୀ ଦି'ପଦ କଥା କହିବାର ଲୋଭ ମୁଛିପାରୁନାହିଁ ।

( ୧୪ )

ବିଦାୟ ନେବା ପୂର୍ବରୁ ମୋର କହିବା ଉଚିତ୍ ମୁଁ ବିଶେଷ ଭାବରେ କାହା-ଠାରୁ ବିଦାୟ ନେବାକୁ ଚାହେଁ, ଯେହେତୁ ମୋର ଆଶା ଓ କାମନା ଯେ ମୋର ଶେଷପଦ କେତୋଟି କେବଳ ଦଲିଲ୍‌ଭୁକ୍ତ ହେବ ନାହିଁ (ଜଣେକ ଲେଖକର ମଧ୍ୟ କିଛିଟା ଅଧିକାର ଅଛି ସାକ୍ଷ୍ୟ ଦେବାପାଇଁ, ଏହି ଭାବରେ), ସାଦରେ ଗୃହୀତ ହେବ । ଯେ ଭୁଲ୍ ହେଉ ଠିକ୍ ହେଉ, ସାହିତ୍ୟବିଦ୍ୟା ଉପରେ ତାଙ୍କର ଦଖଲ ଥାଉ ବା ନ ଥାଉ, ବୟସ୍କ ଲେଖକ ଆମକୁ ଭଲପାଇବା ଯୋଗୁ ଏତେ ଗୁଡ଼ାଏ କଥା କହିଗଲେ । ଆବେଗର ମୂଲ୍ୟ ଅଛି ତାଙ୍କର ଏଇ ନମସ୍କାରରେ...ଧନ୍ୟବାଦ ।

ଏଇଥିପାଇଁ ତ କହିଥିଲି ଦଶମ କିସ୍ତିର ଶେଷରେ, ଯେ ଏଥର "ଭୟେ ଭୟେ ବିଦାୟ ନେବାର ପାଳି ।" କାରଣ କହୁ କହୁ ତ ଅନେକ କଥା କହି ହୋଇଯାଏ, ଭୟ ଆସେ କଥା ସରିଲା ବେଳକୁ । ଯେ କୋଉ ସାହସରେ ମାଡ଼ି ଆସିଲି ଏତେ ଦୂର ? ବିଦ୍ୟା ଅଧ୍ୟାପନା ଆଦିର ଗେଟ୍‌ପାସ୍‌ଟିଏ ନାହିଁ ମୋ ପାଖରେ, ତଥାପି ଫାଟକ ପାରିହୋଇ ପହଂଚିଲିଣି ମଝି ଅଗଣାରେ ? ପ୍ରଗଲ୍‌ଭତା ଆଉ କାହାକୁ କୁହନ୍ତି ?

ତେଣୁ ବିଦାୟର ନମସ୍କାର ପ୍ରଥମତଃ ଏବଂ ବିଶେଷଭାବରେ ଜଣାଉଛି ମୋର ତରୁଣ (ଅବା ବଢ଼ିଲା ବୟସ ହେଲେ ମଧ୍ୟ ସାହିତ୍ୟ ରଚନାରେ ତରୁଣ) ବଂଧୁମାନଙ୍କୁ, ଯେଉଁମାନେ ଗପ ଲେଖୁଛନ୍ତି, ହେଲେ ଲେଖି ସାରି ଭଲହେଲା ନାହିଁ ବୋଲି ତାକୁ ଛିଣ୍ଡେଇ ଦେଉଛନ୍ତି, କିଂବା ଟ୍ରଂକ୍‌ର ଅତଳ ତଳେ ସାଇତି ରଖୁଛନ୍ତି, ଭବିଷ୍ୟତର ସ୍ନେହୀ ଏବଂ ସ୍ମୃତିଚାରୀ ପୁଅଝିଅ ନାତିନାତୁଣୀଙ୍କ ପାଇଁ । ସେଇମାନଙ୍କୁ ମୁଁ ଭଲପାଏ, କାରଣ ମୁଁ ବି ଦିନେ ଥିଲି ତାଙ୍କରି ପରି । ସେଇମାନଙ୍କୁ ମୁଁ ଭଲ-ପାଏ, କାରଣ ମୁଁ ମୋର ସାହିତ୍ୟକୁ ଭଲପାଏ । ଆମ ଦୁହିଁଙ୍କ ଦୀର୍ଘ ଚାଳିଶ ପଇଁଚାଳିଶ ବର୍ଷର ପରିଣୟ ଅସାମାନ୍ୟ ପ୍ରଣୟରେ ଗୁନ୍ଥା, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ, ଯଦିଓ କେତେ ରାଗରୁଷା ମୁହଁଫୁଲା ମାନ-ଅଭିମାନର ପାଲା ଅନୁଷ୍ଠିତ ହୋଇ ଯାଇଛି ଆମ ଭିତରେ ।

ଏଇ ହେଲା ମୋର ଦୁଃସାହସର ସଫେଇ । ଏବଂ ମୋର ଆଶା ଯେ ପ୍ରବୀଣ ଲେଖକ ତଥା ପଣ୍ଡିତମାନେ, ଅନ୍ୟାନ୍ୟ ବିଚାରକମାନେ ମଧ୍ୟ, ମୋର ଏଇ ସଫେଇକୁ ତାଙ୍କ ଉଦାରଗୁଣରେ ସ୍ୱୀକାର କରିନେବେ । ପ୍ରବଂଧ ନ ହେଲା ନାହିଁ, ଲେଖାଟିକୁ ରମ୍ୟରଚନାରେ ଗଣି ତା'ର ଯେତେକ ଦୋଷତ୍ରୁଟି ଅବା ଅନଧିକାର ଚର୍ଚ୍ଚାର ଆସ୍ପର୍ଦ୍ଧାକୁ କ୍ଷମାଦେବେ । ଉଚ୍ଚମନ୍ୟ ହସଟିଏ ହସି କହିବେ—ରମ୍ୟତାକୁ ସାତଖୁଣ ମାଫ୍ !

ଏଣେ ମୁଁ ମୋର ତରୁଣ ବଂଧୁମାନଙ୍କ କାନରେ ଗୋପନରେ କହିବାକୁ ଚାହେଁ ଯେ ଏଇ ରମ୍ୟତାର ଅନୁଭବ ହିଁ ତୁମକୁ ଉସ୍‌କେଇବ ଲେଖିବା ପାଇଁ । ତୁମ ପ୍ରଥମ ସାହିତ୍ୟର ବସନ୍ତକୁ ତା'ର ବେଦନା ମାଧୁରୀକୁ ଆଉ କେହି ବୁଝିବେ ନାହିଁ ତୁମ ଛଡ଼ା, କେଉଁ ପ୍ରବୀଣ କି ପଣ୍ଡିତ, ଲେଖକ, ପ୍ରକାଶକ, ସମୀକ୍ଷକ କି ଆଉ କେଉଁ ପାରି-ହୋଇ ଯାଇଥିବା ମଣିଷ । ତୁମେ ହିଁ ସେଇ ବେଦନାକୁ ଧରି ରଖି ପାରିବ ନିଜ ଭିତରେ ଏବଂ ସେଥିରୁ ମୁକ୍ତହୋଇ ପାରିବ—ହୁଏତ ସେଇ ଥରକ ପାଇଁ, କ୍ଷଣକ ପାଇଁ—ନିଜକୁ ବ୍ୟକ୍ତ କରିବାର ଆନଂଦରେ । ଅତଏବ ଲେଖିଯାଅ, ଆହୁରି ଲେଖିଯାଅ... । ଏବଂ ଲେଖି ସାରିଲା ପରେ ତାକୁ ଛିଣ୍ଡେଇ କିଂବା ଲୁଚେଇ ନ ଦେଇ ବାଂଧିରଖ ଉପସ୍ଥିତ ବର୍ତ୍ତମାନର ଫାଇଲ୍‌ରେ, ପୁଣି ଥରେ ନିରେଖାରେ ପଢ଼ିବା ପାଇଁ । ମାନେ କିଛିଦିନ ଉତ୍ତାରୁ; ସୃଜନ ଆବେଗରୁ ଖଣ୍ଡେବାଟ ଦୂରେଇ ଗଲା ପରେ । ସେଇଠୁଁ ତାକୁ ସଜାଡ଼ି ଦିଅ ଆପଣା ବୁଦ୍ଧିବିଚାର ଅନୁଯାୟୀ । ଦେଖିବ ତୁମର ଆସ୍ଥା ଫେରି ଆସିବ

ନିଜ ଉପରେ । ତା'ପରେ ଆସିଲେ ଆସନ୍ତୁ ଅନ୍ୟମାନେ, ସହୃଦୟ ସାହିତ୍ୟିକ ବଂଧୁ ପ୍ରକାଶକ ଓଗେର । କେତେଦିନ ସେମାନେ ତୁମର ସ୍ବତଃସ୍ଫୂର୍ତ୍ତ ତଥା ମାର୍ଜିତ ଆନଂଦ ଲହରୀର ବାଟ ଓଗାଳି ପାରିବେ ? କିଂତୁ ବେଦନାରୁ ସିନା ଆନଂଦ ! ତେଣୁ ପ୍ରଥମେ ତୁମର ବେଦନାକୁ, ତା'ର ନୂତନ ଅନୁଭବକୁ ଚିହ୍ନି ରଖ । ଏବଂ ଯେକୌଣସି କାରଣରୁ ତାକୁ ଫେରାଇ ଦିଅ ନାହିଁ, ଏତିକି ମୋର ଅନୁରୋଧ । ଏଇ ବସନ୍ତଟି ଭାରୀ ଅଭିମାନୀ, ତାକୁ ପୁଣି ଥରେ ଡାକି ଆଣିବା ସହଜ ନୁହେଁ । ଅପରନ୍ତୁ ସହଜ ସ୍ବଭାବିକ ଯେ ସେ ମିଳେଇଯିବ ଦୈନଂଦିନ ଜୀବନର କୋଳାହଳରେ, ମଉଳିଯିବ ନାନା 'ମୂଲ୍ୟବାନ୍' ଉଦ୍ୟମର ଖରଝାଂଜି ଅବା ହେମାଳର ଦାଉକୁ ସହିନ ପାରି ।

ରମ୍ୟତା । ଏ ଜୀବନଟା କେଡ଼େ ସୁଂଦର ! ସକାଳୁ ଉଠିଲାବେଳକୁ ଆକାଶରେ ଯେଉଁ ରଂଗ, ପବନରେ ଯେଉଁ ସଂଗୀତ, ତା'ର ପ୍ରତିଶ୍ରୁତିକୁ ନେଇ ମୁଁ କ'ଣ କରିବି କହିଲ ? ତା'ପରେ ଦିନଟାଯାକ କେତେ ଲୋକବାକ, ଅଂତରଂଗ କଳରୋଳ, କେତେ ଗ୍ରନ୍ଥଚଂଚଳ ଦେଖିବା, ଶୁଣିବା, ଛୁଆଁଛୁଇଁ ଓ ଘେନାଘେନିର ଆନଂଦ । ଯାଉଛି କୁଦିବି, ଡେଇଁବି, ପାଟି କରିବି, ଭେଁ ଭେଁ ହୋଇ କାଂଦିବି, ସେଇଠୁଁ ଫେଁ' ଫେଁ' ହୋଇ ହସିବି । ସୁଂଦରତାକୁ ଆବୁରି ନ ପାରିଲା ପରି କିଏ ଏମିତି ବାଉଳା ହୁଏ ? ଖାଲି କ'ଣ ଟିକିବାଛୁରୀ ନା କୁନାକୁନି ? ବଡ଼ ମଣିଷର କ'ଣ ଏମିତିକା ଭାବ ଆସେ ନାହିଁ ? ଆସେ, ବିଶେଷତଃ ପ୍ରଥମ ଯୌବନରେ । ଏବଂ ତାକୁ ଅବହେଳା କରିବାର ନୁହେଁ, ମୋଟେ ନୁହେଁ । ସେଇଠୁଁ ସୃଷ୍ଟି ହେଉ ସାହିତ୍ୟ । ବେଦନାରେ, ଆଂନଦରେ......

ଏବଂ ବିସ୍ମୟରେ । ପ୍ରତ୍ୟେକ ଅନୁଭବ ନୂଆ, ଏବଂ ଗୋଟିଏ ଗୋଟିଏ ଅଭିନବ ରତ୍ନ । ଆରେ, ଏଉଟି ପୁଣି କ'ଣ ? ଯାଉଛି, ଯାକୁ ବି ଗୋଟେଇ ନେବି । ପକେ-ଟ୍‌ରେ ପୂରେଇବି ? ଅଣ୍ଟାରେ ଖୋସି ଦେବି ? କିନ୍ତୁ ହେଇ, ଆହୁରି ଗୋଟିଏ ସୁଂଦରିଆ ଚକଚକିଆ ! ହେ ଭଗବାନ୍ ! ମୋତେ ଶକ୍ତି ଦିଅ, ସମୟ ଦିଅ, ଏ ସବୁ-ଟାକୁ, ଅନ୍ତତଃ ଏଥିରୁ ଅଧିକରୁ ଅଧିକ ନେଇ ଯାଇ ପାରିବି । ସୃଜନର ବସନ୍ତରେ ଏଭଳି ବ୍ୟାକୁଳତା, ଆକ୍ରମକ ଲୋଭ, ମଧ୍ୟ ଆସେ ଏବଂ ଦାହଶକ୍ତି ଯୋଗାଏ ଲେଖିବା ପାଇଁ, ଯେଉଁ ଭାବରେ ଯେମିତି ହେଲେ.........ଆହା, ଇଏ ମଧ୍ୟ ସାହିତ୍ୟର ଇତି-ହାସ ! ଏଇ ଅସମ୍ଭାଳପଣରେ ବାହୁଲ୍ୟଦୋଷ ଅନିବାର୍ଯ୍ୟ । ବେଶ୍, କ'ଣ ହେଲା ସେଇଠୁଁ ? ବିଖ୍ୟାତ ଆଧୁନିକ କଥାକାର ଫ୍ରାନ୍‌ଜ୍ କାଫ୍‌କା ତାଙ୍କର ବିଖ୍ୟାତ ପୂର୍ବଜ

ଗ୍ଲର୍ଲସ୍ ଡ଼ିକେନ୍‌ସଙ୍କୁ କ୍ଷମାକରି ପାରିଲେ, ଏଇ ଦୁର୍ବଳତା, ବେପରୁଆ ସଂପଦର ଉଚ୍ଛୁଳା-ପଣ (all richness and heedless overflowing)କୁ ନେଇ । ଆଉ ତୁମେ ଆମେ କ'ଣ ତାକୁ ସ୍ୱୀକାର କରିନେଇ ପାରିବା ନାହିଁ ?

ତା'ହେଲେ ବାଉଳାବସନ୍ତକୁ ଡରିବ କାହିଁକି ମ ? କେଉଁ ଦୁଃଖରେ ?

ହଁ, ଏ ରଂଗ ହୁଏତ ରହିବ ନାହିଁ । ବିଚିତ୍ର ସୁଂଦରରୁ 'ସୁଂଦର' ପଦଟି ଲିଭି ଲିଭି ଯିବା ସ୍ୱାଭବିକ । ଅଭିଜ୍ଞତାକୁ ବିଶ୍ୱାସ ନାହିଁ । ତା'ବୋଲି କ'ଣ ଲେଖାଲେଖି ଛାଡ଼ିଦେବ ? କିଓ, ଆମୋଦ କ'ଣ କମ୍ ଉପାଦେୟ ବସ୍ତୁଟିଏ ? ମୁଁ ଯାଙ୍କ ଭିତରେ ଥାଇ ମଧ୍ୟ ନାହିଁ, ତାଙ୍କର ସବୁ ମିଛସତ, ମାଡଗୋଳ, ହନ୍ତସନ୍ତକୁ ଅନୁଭବ କରୁଛି, କିନ୍ତୁ ପରୋକ୍ଷରେ, ଏବଂ ଉର୍ଦ୍ଧ୍ୱରେ ଥାଇ, ତେଣୁ ମୃଦୁ ମୃଦୁ ହସି ପାରୁଛି...... ଲେଖକ ହୋଇ ନ ଥିଲେ ମୋର ଅବସ୍ଥା କ'ଣ ହୋଇ ଥାଆନ୍ତା ଭବିଲ ଦେଖି ? ଏଇ ଆତ୍ମ-ଗାରିମାର ମର୍ଯ୍ୟାଦାକୁ ଊଣା କରିବାର ନୁହେଁ । କହିବାକୁ ଗଲେ ସଭ୍ୟତାର ସୌଖୀନ ଶାନ୍ତି ମଧ୍ୟ ଏଇଥିରୁ ମିଳିବ । ବୁଦ୍ଧିମତ୍ତା ଓ ସହିଷ୍ଣୁତା ଏବଂ ତଦ୍‌ଭବ ରସବୋଧ (intelligence and tolerance good humour) ସଭ୍ୟତାର ସର୍ବ-ଶ୍ରେଷ୍ଠ ଉପାଦାନ ବୋଲି କୁହାଯାଏ ପରା ? ସୁଂଦର ହେଉ କି ଅସୁଂଦର, ବିଚିତ୍ର ସଂସାରକୁ ନକଲ କରି ମୁରୁକିହସା ଦେଇ ଯେଉଁ ସାହିତ୍ୟ ଲେଖାଯାଏ, ତା'ଠାରୁ ବଳଶାଳୀ ମାଧ୍ୟମ ଆଉ କ'ଣ ଅଛି, ଯଦ୍ୱାରା ସଭ୍ୟତାର ଉପରୋକ୍ତ ନିୟାମକ ଗୁଣ-ଗୁଡ଼ିକୁ ହାସଲ କରିହେବ ?

ତେଣୁ ବସନ୍ତକୁ ହରାଇଥିଲେ ମଧ୍ୟ ପରିଣତ ଋତୁକୁ ହତାଦର କରିବ କାହିଁକି ? ସାହିତ୍ୟଗତ ସଭ୍ୟତା କ'ଣ ତୁମର ନାପସନ୍ଦ ହେଉଛି ?

ଏଇଠି ତୁମେ ବୋଧହୁଏ ମୋତେ ଚେତାଇଦେବାକୁ ଚାହିଁବ ଯେ ଗତ ଦୁଇଟି କିସ୍ତିର ଲେଖାରେ ମୁଁ ସଭ୍ୟ ଶାନ୍ତ ବୁଦ୍ଧିମତ୍ତା (intelligence) କଥା କହୁ ନ ଥିଲି, ଶକ୍ତଅଶାନ୍ତ ବୌଦ୍ଧିକତା (intellect) ର ଗୁଣଗାନ କରୁଥିଲି, କହୁଥିଲି ଯେ ଚିନ୍ତା-ଶୀଳତାର ସ୍ତରରେ ହିଁ ଉତ୍‌କୃଷ୍ଟ ଗଳ୍ପ ଲେଖାଯାଇ ପାରିବ । ଏବଂ ତୁମେ କହିପାର ଯେ ଜାଣିଶୁଣି ସେ ଯାଏଁ ଯିବାର, ମିଛୁଆ ବସନ୍ତ ବାଟଦେଇ ନିଗଟ ଶୁଷ୍କତାକୁ ଲେଡିବା ତୁମର ଲକ୍ଷ୍ୟ ନୁହେଁ । ତେଣୁ ବୋଧହୁଏ ମୂଳରୁ ଲେଖାଲେଖି ଛାଡିଦେଲେ ଭଲ ।

ହାୟ ! ମୁଁ ମର୍ମାହତ, ଯଦି ତୁମେ ଭବୁଥାଅ ଯେ ମୋର ତଥାକଥିତ ପୁରୁଖାପଣ ତୁମକୁ ମୁହଁ ଶୁଖେଇବାକୁ କହୁଛି, ବର୍ତ୍ତମାନ କିମ୍ବା ବର୍ତ୍ତମାନରୁ ଲମ୍ବିଯାଇ

ଭବିଷ୍ୟତର ଆଗମ ଚଉକିରେ । ମୁଁ ଯାହା କହିଛି ଠିକ୍ କହିଛି, ମୋ ହିସାବରେ । କିନ୍ତୁ ତା'ର ଅର୍ଥ ନୁହେଁ ଯେ ତୁମେ ଆଜିଠୁଁ ସୁଅ ଫାଗରେ ଲଢେଇ କରିବ, ତାରୁଣ୍ୟର ସ୍ୱଧର୍ମକୁ ଭୁଲିଯିବା ପାଇଁ ଚେଷ୍ଟା କରିବ । ସେଥିର ଫଳ ଓଲଟା ହେବ । ଜୀବନ ନୁହେଁ । ସାହିତ୍ୟସୃଷ୍ଟି ପ୍ରତି ରଗ ଆସିବ, ହାତାଶ ହୋଇ କଲମ ମୁନ ଭଙ୍ଗିଦେବାକୁ ମନହେବ । ନା, ସେଭଳି ଭୁଲ୍‌କରି ମୋତେ ଲଜ୍ଜା ଦିଅନାହିଁ । ତା'ଛଡ଼ା ଦାର୍ଶ-ନିକତା ଓରଫ୍ ଚିନ୍ତାଶୀଳତାରେ ମୁହଁଶୁଖାପଣ ରହିବାକୁ ବାଧ୍ୟ । ଏକଥା କିଏ କହିଲା ? ମୋ ମତରେ ଚିନ୍ତାଶୀଳତା କେବଳ ଏକ ବିଶିଷ୍ଟ ଏବଂ ମହତ୍ତର ଆନନ୍ଦର ଜନକ ତା'ନୁହେଁ । ସେଥିରେ ପ୍ରକୃଷ୍ଟ ଦ୍ୱିପାକ୍ଷିକ ଛାଇ–ଆଲୁଅର ଅନୁଭବ ମଧ୍ୟ ଆସିବା ଉଚିତ । ଯେଉଁ ଦୃଷ୍ଟିରେ ମୁଁ କହିଥିଲି ଯେ ଜୀବନଟା ପିତାହେଲେ ହେଉ, "ଏଇ ତିକ୍ତତାରେ ଯେଉଁ ଅତି-ଅନୁଭବର ଉଦ୍ଦୀପନା ଅଛି, ଏହାର କଡ଼େ କଡେ ଯେଉଁ ମଧୁରତା ଅଛି, ତା'ର ବାସ୍ତବତାକୁ ମଧ୍ୟ ଅସ୍ୱୀକାର କରିବାର ନୁହେଁ......"ଇତ୍ୟାଦି । ଏବଂ ଏହି ପରିପ୍ରେକ୍ଷୀରେ ମୁଁ ବିଶ୍ୱାସ କରେ ଯେ କୌଣସି ଶୁକ୍ଳକେଶ ପ୍ରବୀଣତା ନାତିନାତୁଣୀଙ୍କ ହାତ ନ ଧରିଲେ ତିଷ୍ଠି ପାରିବ ନାହିଁ, ଧରଶାୟୀ ହୋଇ ମୃତ୍ୟୁକୁ ହିଁ ଲୋଡ଼ିବ । କୌତୁକର ଆଶ୍ରା ନ ନେଲେ କୌଣସି ଜୀବନଦର୍ଶନ 'ମୁଁ ଜଡ଼ ନୁହେଁ ଜୀବନ୍ତ' ବୋଲି ଆଶ୍ୱାସନା ଦେଇ ପାରିବ ନାହିଁ ତା'ର ଗ୍ରାହକମାନଙ୍କୁ । ରହସ୍ୟବାଦୀ ଖାଲିଲ୍ ଗିବ୍ରାନ୍‌ଙ୍କ ସୁ-ଉକ୍ତି ମନେପଡ଼େ—"ଯେଉଁ ଜ୍ଞାନରେ କାଂଦଣା ନାହିଁ; ଯେଉଁ ଦର୍ଶନ ହସେ ନାହିଁ, ଯେଉଁ ବଡପଣ ପିଲାଙ୍କ ପାଖରେ ମୁଣ୍ଡ ନୁଆଇଁ ପାରେ ନାହିଁ, ମୋତେ ବଂଚେଇ ରଖ ସେମାନଙ୍କ ଠାରୁ ।" ତେଣୁ ମୋର ନିବେଦନ ଯେ ଦାର୍ଶନିକ-ତାର ଭାରୀପଣକୁ ଡରିବା କଥା ନୁହେଁ, ସେ ଆସିଲେ ଆସୁ ଆପେ ଆପେ । କିଂତୁ ଆସିଲାକ୍ଷଣି ତାକୁ ସ୍ୱୀକାର କର, ସମ୍ମାନ ଦିଅ ।

ବୌଦ୍ଧିକତାର ଅଭାବ ଅଥବା ସମ୍ଭାବନାରେ ତଥାପି ଅସ୍ଥିର ହେବା ଉଚିତ ବୋଲି ମନେକରୁଛ ? ଏବଂ ଲେଖାଲେଖି ଏତିକିରେ ଥାଉ ବୋଲି କହିବାକୁ ଭଲ-ଲାଗୁଛି ?

ଭାବୁଛି ମୁଁ ତୁମକୁ ମଂଗେଇ ପାରିଛି ମୋର ଆଜୀବନ ଆଗ୍ରହ, ଆବେଗ ତଥା ଏକବାଗିଆ ପଣକୁ କିଣିନେବା ପାଇଁ । ବିଦାୟର ଆଳରେ ମୋର ଉଦ୍ଦେଶ୍ୟ ଆଉ କ'ଣ ବୋଲି ଭାବିଥିଲ କି ?

କିନ୍ତୁ ଏଯାଏଁ ଯାହା କହିଲି ସେଥିରେ ମଧ୍ୟ ଯଦି ତୁମେ ସନ୍ତୁଷ୍ଟ ନୁହଁ, ତାହା ହେଲେ ମୋତେ ଟିକିଏ ଦୁଷ୍ଟ ହେବାକୁ ପଡ଼ିବ । ଏକବାଗିଆପଣ ନାମକ ଅବିଗୁଣର

ଜୟଗାନ କରିବାକୁ ହେବ । ମୋ ମତରେ ଇଏ ଅବିଗୁଣ ନୁହେଁ, ଦେବତାର ଆଶୀର୍ବାଦ । ଧର, ସମାଜର ଅନ୍ୟମାନେ ଜାଣିଲେ ଯେ ତୁମେ ଗୋଟିଏ ଅଜବ୍ ପ୍ରାଣୀ । କାହିଁକିନା ସେମାନେ ମଉଜ କଲାବେଳେ କି କେଉଁ 'ଦରକାରୀ' କାମ କଲାବେଳେ ତୁମେ ଘରକୋଣରେ ବସି ଝାଳନାଳ ହୋଇ କ'ଣ ଗଂଧି ଗୁଳିଛ । ଆହା ଲେଖକଟିଏ ! ଭୀରୁ, ସ୍ୱପ୍ନାଳୁ, ଗୋଠଖଣ୍ଡିଆ, ନିରୀହ ଲୋକଟିଏ । ଅଳ୍ପବହୁତ ପାଗଳ କହିଲେ ଚଳେ । ଦୟା ଦେଖେଇବେ କହିବେ ଛାଡ଼ ତାକୁ ଏସବୁଥିରେ ପୂରେଇ ଲାଭ ନାହିଁ । ଭଲକଥା, ସେଇହେଲା ତୁମ ନିବୃତ୍ତି, ତହୁଁ ମୁକ୍ତିର ପାସ୍‌ପୋର୍ଟ । ପ୍ରଥମେ ପ୍ରଥମେ ହୁଏତ ତୁମେ ମନେ ମନେ କୁରୁଳି ଖାଇବ ସେମାନେ ତୁମ ପ୍ରତି ଦୟା ଦେଖାଇଲାରୁ ତୁମକୁ ମଜା ଲାଗିବ ଯେ ତୁମେ ହିଁ ତାଙ୍କୁ ଲୁଟି ନେଉଛ । ଲେଖକର ଏଇ ଭାବକୁ ଜେମ୍‌ସ୍ ଜଏସ୍ "ପଳାତକର ଚୁପ୍‌ସଇତାନି ଓ ଗୁଲାଖି" (silence, exile, and cunning)ବୋଲି କହିଥିଲେ । "Heat and Dust"ର ଲେଖିକା ରୁଥ୍ ଝାବ୍‌ୱ୍ୟାଲା ତା'ର ବ୍ୟାଖ୍ୟା କରି କହିଲେ—"ବୁଝିଲି ଯେ ମୋର ଉଚିତ ମୁଁ ପାଟି ଚୁପ୍‌କରି ରହିବି, ଆଉ ଗତିର ଚୋରପରି ଲୁଟିନେବି ତାଙ୍କ ସଂସାରରୁ ମୋର ଯାହା କିଛି ଦରକାର, ଲୁଚେଇ ଦେବି ମୋ କଳ୍ପନାର ଗୋପନ ଗୁହା ଭିତରେ, ଆଉ ସେଇଆକୁ ନେଇ କରିବି ମୋର ଯାହା କରିବା କଥା ।" ଆଃ କି ଅପୂର୍ବ ସ୍ୱାର୍ଥପରତା !

କିନ୍ତୁ ବିଚ୍ଛିନ୍ନତାର ଅନ୍ୟ ନାମ ସ୍ୱାର୍ଥପରତା ନୁହେଁ । ଅନ୍ତତଃ ତା'ର ଶେଷକଥା ପୂରାପୂରି ଭିନ୍ନ । ନିଘଟ ସ୍ୱାର୍ଥଶୂନ୍ୟତା । ଆଧ୍ୟାତ୍ମିକତାର ପାଖାପାଖି । କାହିଁକିନା ଯଥେଷ୍ଟ ସମ୍ଭାବନା ଅଛି ଯେ କ୍ରମଶଃ ତୁମ ନିଜର ବସ୍ତୁ ବୋଲି କିଛି ରହିବ ନାହିଁ, ଖାଲି "ବାସ୍ତବତା", ଅନ୍ୟର ଥାଳୀରେ ପରଷିବା ପାଇଁ । ସେହିପରି ଭାବରେ ନିଜ ସୁଖ, ଦୁଃଖ, ଶୋକ, ସନ୍ତାପ, ଇତ୍ୟାଦି । ନିଜଠାରୁ ଏମିତି ଓହରି ଯାଇ ପାରିଲେ ଧରାଛୁଆଁ ଦେଉ ନ ଥିବା ଅସଲ ନିଜପଣ, ଯାହାକୁ ପରମାତ୍ମାଗତ ଆତ୍ମା ବୋଲି କୁହାଯାଏ, ସେ ସତେ ଆଦରରେ ହସିବ ତୁମ ଆଡ଼କୁ ଚାହିଁ, ବାସ୍ତବରୁ ସତ ଆଡ଼କୁ ଟାଣିନେବ ଜୋର୍ କରି, ଲେଖକ ହୋଇ ଏଭଳି ସ୍ୱପ୍ନ ଦେଖିବା ବୃଥା ବୋଲି ମୁଁ କଦାପି କହିବି ନାହିଁ ।

ହଉ, ଲେଖକ ପଣିଆକୁ ଆଧ୍ୟାତ୍ମିକତାର ରାଜପଥ ନ କହିଲେ ନାହିଁ । କିଂତୁ ଇଏ ଯେ ନିଶ୍ଚିନ୍ତ, ବିଲୀନ ହେବାର ବାଟ, 'ଅଳ୍ପବହୁତ' ପାଗଳାମିର କ୍ରମଶଃ, ଏଥିରେ କିଛି ସନ୍ଦେହ ଅଛି ?

ଆରେ, ଗପଟିଏ ଲେଖିବାକୁ ଫୁସୁଲେଇ ଏଭଳି ଏକ ଅଦୃଷ୍ଟର ବିଶ୍ୱରୂପ ନ ଦେଖେଇଲେ ଚଳନ୍ତା ନାହିଁ ?...କ୍ଷମା କରିବ, ମୁଁ ମୋର କର୍ତ୍ତବ୍ୟକୁ ଦରଖଣ୍ଡିଆ କରି ଛାଡ଼ି ଦେଇ ପାରି ନ ଥାଆନ୍ତି । ନୈଷ୍ଠିକ ଲେଖକପଣିଆରେ ଏଇ ତଥାକଥିତ ହାନିର ସମ୍ଭାବନା, ଯାହାକୁ କହନ୍ତି ବିଜିନେସ୍ ରିସ୍କ, ରହିଛି ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ହେଲେ ପୃଥିବୀର ବିଭିନ୍ନ ଲେଖକ ତାଙ୍କର ଏଇ ହାନିଲାଭର ଚମତ୍କାରକୁ କେତେ ଭଲ ପାଆନ୍ତି, ଜାଣିନ ସେକଥା ? ଶୁଣିବାକୁ ଚାହିଁଲେ ଆହୁରି କହୁଛି ଶୁଣ–

ଉଇଲିୟମ୍ ଫକ୍‌ନର୍ – କଳାକାରକୁ ରାକ୍ଷସମାନେ ଗୋଡ଼େଇ ଥାଆନ୍ତି ସଦାବେଳେ । ସେ ଜାଣେ ନାହିଁ ସେମାନେ ତାକୁଇ କାହିଁକି ବାଛିଲେ । କିଂତୁ ସେ ଏତେ ବ୍ୟସ୍ତ ଥାଏ ତା' କାମରେ ଯେ ସେ ବିଷୟରେ ମୁଣ୍ଡ ଖେଳାଇବାକୁ ଚାହେଁ ନାହିଁ ।

ଇ. ଏମ୍. ଫୋର୍ଷ୍ଟର – ସୃଷ୍ଟି କରିବାର ଯଂତ୍ରଣା କଅଣ ବୋଲି ମୁଁ ବୁଝେ ନାହିଁ । ମୋତେ ଲେଖିବାକୁ ଭଲଲାଗେ ବୋଲି ମୁ ଲେଖେ, ଲେଖିଯାଏ ।

ଗ୍ରାହାମ୍ ଗ୍ରୀନ୍ – ବେଳେବେଳେ ମୁଁ ଆଶ୍ଚର୍ଯ୍ୟ ହୁଏ ଯେ ଯେଉଁମାନେ ଲେଖନ୍ତି ନାହିଁ, ସ୍ୱର ତିଆରି କରନ୍ତି ନାହିଁ କି ଛବି ଆଂକନ୍ତି ନାହିଁ, ସେମାନେ ମଣିଷ-ଦଶାର ମାରକ ଦୁଃଖ, ପାଗଳାମି ଇତ୍ୟାଦିର ଆତଂକରୁ ରକ୍ଷା ପାଆନ୍ତି କେମିତି ।

ବୋଢ଼େଲେୟାର୍ – ଲେଖୁଛି ବୋଲି ସିନା, ନହେଲେ ମୁଁ ପାଗଳ ହୋଇ ସାରନ୍ତିଣି ।

ଗୁଷ୍ଟାଭ୍ ଫ୍ଲାଉବର୍ଟ – ଏଇ (ଲେଖା) କାମଟା ନଥିଲେ ବେକରେ ପଥର ବାଂଧି ନଈରେ କୁଦି ପଡ଼ିବା ଛଡ଼ା ଅନ୍ୟ ଗତି ନଥାଆନ୍ତା ।

ଉଇଲିୟମ୍ ସାରୋୟାନ୍ – ଏଇହେଉଛି ମୋ ଜୀବନର ପେଷା, ସବୁଠାରୁ ଉତ୍କୃଷ୍ଟ ପେଷା, ଏବଂ ସବୁଠାରୁ ହାସ୍ୟାସ୍ପଦ ।

ଏମିତି କେତେ ଲେଖକ ତାଙ୍କର ଅନନ୍ୟ ଅବିଗୁଣର ସ୍ତୁତି ଗାଇଛନ୍ତି, କହିଲେ ସରିବ ନାହିଁ ତାଙ୍କ "ଧନ୍ୟୋସ୍ମି !"ର ଗାଥା । ମନେହେବ ଯେ ସଂସାର ସାରା ପାଗଳ, ଆଉ ସେଇମାନେ ହିଁ ସୁସ୍ଥ । ଏଇ କିଛିଦିନ ତଳେ ୧୯୮୮ର ସାହିତ୍ୟ ପାଇଁ ନୋବେଲ୍ ପୁରସ୍କାର ପାଇଥିବା ମିଶର ଦେଶର କଥାକାର ନାଜିବ୍ ମହାଫୁଜ୍ କ'ଣ କହିଲେ ଶୁଣିଥିବ । କହିଲେ–"ଯଦି କେବେ ଲେଖିବାର ପ୍ରବୃତ୍ତି ଛାଡ଼ି ଚାଲିଯାଏ, ମୋତେ

ସେଇ ଦିନଟି ମୋର ଶେଷଦିନ ହେଉ ।" କେଉଁ ଇତିହାସ କିଂବଦନ୍ତୀର ମହାପ୍ରଣୟୀ ଯାଙ୍କ ସମକକ୍ଷ ହୋଇ ପାରିବ ?

ଯାହାହେଉ ଏଭଳି ତଲ୍ଲୀନତା (ତାକୁ ପାଗଳାମି କହିଲେ କ୍ଷୁହ)ର ବଡପଣ ଅନେକ ଦୂରରେ । ଏବଂ ଧର ତୁମେ ଯଦି କେବେ ସେଇ ଭବରେ ବୁଡିଯିବ, ଆଉ ସେମାନେ ତୁମକୁ ଥଟ୍ଟା କରିବେ, ତୁମେ ବୋଧହୁଏ ଓଲଟି ଜବାବ୍ ଦେଇ ପାରିବ ପାଗଳଠାକୁର ରାମକୃଷ୍ଣ ପରମହଂସଙ୍କ ପରି; "ମନକୁ ପାଇଲା ପରି ପାଗଳ ହୋଇ ପାରିଲି କୋଉଠୁଁ !"

ଉପସ୍ଥିତ ବର୍ତ୍ତମାନର ଗୁହିଦା ହେଲା, ଲେଖ । ଅଣସାହିତ୍ୟିକ ପାଣିପାଗକୁ ପରୁଆ କର ନାହିଁ । ପ୍ରବଣତାକୁ ଦାୟିତ୍ୱ ମନେକରି ଲେଖ, ଆପଣାର ନିଷ୍ଠା ଓ ଆନ୍ତରିକତା ହିଁ ତୁମକୁ ବାଟ କଢ଼େଇବ । ମୁଁ ପୂର୍ବରୁ ଯାହା କିଛି କହିଗଲି, ସେ ସବୁ ଭୁଲିଗଲେ ଚଳିବ । କିଂତୁ ତୁମ ସୃଜନ ସରଗକୁ ବଢେଇବାର ଏଇ କଥା କେଇପଦ, ମୋର ବିନୀତ ବିଦାୟୀ ଉଦ୍‌ବୋଧନକୁ ଘେନାକରିବ ଏଇ ଭରସାରେ ରହିଲି ।

। ନମସ୍କାର ।

-ସମାପ୍ତ-